'ଜାନକା' ବୋଲି କେହି ତା'ର ପୁଅ ନାହିଁ, 'ଜାନକୀ' ବୋଲି ତା'ର ଝିଅ ନାହିଁ, ତଥାପି ତାକୁ ଡାକନ୍ତି 'ଜାନକାମା' ଓ ଡାକିଲେ ସେ 'ଓ' କରେ । ତା'ର ନାଁ ଦିଆହେଲା ଦିନୁଁ ସେ 'ଜାନକାମ୍ମା',— "ମା ସୀତା ଠାକୁରାଣୀ" ଅର୍ଥରେ ଆନ୍ଧ୍ରର ଶ୍ରୀକାକୁଲମ୍ ଜିଲ୍ଲାରେ ଗୋଟିଏ ଗାଁରେ ତା'ର ତେଲୁଗୁଭାଷୀ ବାପ ମା ସ୍ନେହରେ ତାକୁ ଜାନକାମ୍ମା ନାଁ ଦେଇଥିଲେ, ଏ ସହରରେ ଓଡ଼ିଆ ଭୁଣ୍ଡରେ ସେ ଗୃହୀତ ହୋଇଛି ଜାନକାମା ବୋଲି ।

ତା ଗାଁରେ ସେ ବଢ଼ିଥିଲା, ଚାଷୀ ପରିବାର, ଜାତିରେ ସେ ତା ଅଞ୍ଚଳର 'କ୍ଷତ୍ରିୟ' ଓ ସେ ବି ସ୍ୱପ୍ନ ଦେଖିଥିଲା ଚାଷୀ ଘରର ଘରଣୀ ହୋଇ ସେ ଜୀବନ ବିତାଇବ । ଯୋଗକୁ ମିଳିଗଲା ବି ସେପରି ଭଲ ଘରଟିଏ, ବର ଯୋଗୁଲୁର ବହୁତ ଚାଷଜମି, ବହୁତ ଗାଈ ମଇଁଷି, ତା ଗାଁରେ ସେ ଗୋଟିଏ ନାଁଡାକ୍ ଧନୀଘର । କିନ୍ତୁ ସେ ହୋଇଆସିଲା ଯୋଗୁଲୁର ଦ୍ୱିତୀୟ ପକ୍ଷର ସ୍ତ୍ରୀ, ଯୋଗୁଲୁର ବୟସ ଚାଳିଶି, ତା'ର ପ୍ରଥମା ସ୍ତ୍ରୀ ମରିଥିଲା, ଘରେ କୋଡ଼ିଏ ବର୍ଷର ପୁଅ ସୋମେୟା, ଷୋଳ ବର୍ଷର ଝିଅ ସାବିତ୍ରୀ ଦୁଇ ବର୍ଷ ହେବ ବିଭା ହୋଇ ଶାଶୁଘରକୁ ଯାଇ ସାରିଥିଲା । ଜାନକାମ୍ମ ର ବାପ ମା ବିଚାର ଦେଖିଥିଲେ––ଆଉ ଯାହା ହେଉ, ଝିଅଟି ବହୁତ ଧନସମ୍ପତ୍ତିର ଅଧିକାରିଣୀ ହୋଇ ସୁଖରେ ତ ନିଶ୍ଚିନ୍ତ ରହିବ, ଆଉ ଯୋଗୁଲୁ—ବୟସ ଚାଳିଶି ହେଲେ ବି ଖୁବ୍ ସ୍ୱାସ୍ଥ୍ୟମନ୍ତ ବଳିଷ୍ଠ ମଣିଷ ଓ ଜଣେ ଭଲ ଲୋକ ବି ତା'ର ନାଁ ଅଛି । ଜାନକାମ୍ମାକୁ ବୟସ ସେତେବେଳେ ଅଠର ପୂରିଛି, ଶାଶୁଘରେ ତା ଦେହରେ ସୁନା ଅଳଙ୍କାର ଖଞ୍ଜା ହେଲା, ସେ ଦେଖିଲା ତାଙ୍କ ଘରର

କୋଠିଆ, ମୁଲିଆ, ହଳିଆ, ଓ ଦେଖିଲ୍ ଭାଇ ଭାଇ ଏକାଠି ହୋଇ ରହୁଥିବା ଗୋଟିଏ ବଡ଼ ପରିବାର । ସମସ୍ତେ ତାକୁ ଆପଣାର କରିନେଲେ ।

ତା'ପରେ ବର୍ଷ କେଇଟାରେ କେମିତି କୁଆଡ଼ୁ କ'ଣ ବଦଳି-ଗଲା, ଭାଇ ଭାଇ ଭିନେ ହେଲେ, ଜମି ଭାଗ ପାଇଁ, ଅଧିକାର ପାଇଁ ଲାଗି ରହିଲା ସେମାନଙ୍କ ଭିତରେ ମକଦ୍ଦମା, ଜାନକାମ୍ମାର ଅଳଙ୍କାରତକ ଗୋଟି ଗୋଟି ହୋଇ ଚାଲିଗଲା, ଗୋରୁ ମଇଁଷି ଗଲେ, ଜମିବାଡ଼ି ଗଲା, ଗୋଟିକ ପରେ ଗୋଟିଏ ହୋଇ ଜାନକାମ୍ମା ଜନ୍ମ କରୁଥିବା ଚାରୋଟି ପୁଅ ମରିଗଲେ, ବଳିଲା ଦୁଇମାଣ ଜମି ଓ ତିନି ବଖରା ଘର, ସେତିକ ସୋମେୟାଙ୍କୁ ଧରେଇ ଦେଇ ଜାନକାମ୍ମାଙ୍କୁ ଓ ତା'ର ଦୁଇ ବର୍ଷର ଝିଅ ରଙ୍ଗାମ୍ମାଙ୍କୁ ସଙ୍ଗରେ ନେଇ ଯୋଗୁଲୁ ତା ଗାଁର ଦୁଇଜଣ ଲୋକଙ୍କ ସଙ୍ଗେ ଚାଲିଆସିଲା ଓଡ଼ିଶାର ଏ ବଢ଼ି ଉଠୁଥିବା ସହରକୁ, ଶୁଣିଥିଲା ଏଠି ତା ଅଞ୍ଚଳର ଆହୁରି ଅନେକେ ଆସି ରହିଛନ୍ତି, ପ୍ରକାର ପ୍ରକାର କାମଧନ୍ଦା ମିଳେ । ସହରତଳିରେ ଖାଲି ପଡ଼ିଥିବା ପଡ଼ିଆ ଜାଗାରେ ସେମାନେ କୁଡ଼ିଆ ଠିଆକରି ବସତି କରି ବସିପଡ଼ିଛନ୍ତି, ସେ ବି ସେଠି ଖାପିଯିବ ।

ଆଗ ବନ୍ଧୁ ପିଣ୍ଡାରେ ତାଟି ଆଡ଼ ଦେଇ ବସିପଡ଼ି ଯୋଗୁଲୁ ବି ଗୋଟିଏ ଅଲଗା କୁଡ଼ିଆ ସାମାନ୍ୟ ଭଡ଼ାରେ ପାଇଗଲା, ତା'ପରେ କାଠ କରତିବା କାମ ପାଇଗଲା ଗୋଟିଏ କାଠଗୋଲାରେ, ମୂଲ ଦିନକୁ ଅଢ଼େଇ ଟଙ୍କା । ତା'ର ବଳ ଓ ତା'ର କ୍ଷିପ୍ରତା ହିଁ ମାଲିକକୁ ଆକୃଷ୍ଟ କରିଥିଲା, ଙ୍କମେ ତା'ର ବ୍ୟବହାର ଓ ସ୍ୱଭାବ ଚରିତ୍ର । ସେ ବସ୍ତିର ଅନେକ ସ୍ତ୍ରୀଲୋକ ସକାଳୁ ମଜୁରି ଖଟିବାକୁ ବାହାରି ପଡ଼ନ୍ତି, ଜାନକାମ୍ମା ବି ଭାବେ ସେ ନିଜେ କିଛି ଅର୍ଜନ କରିବା ଆବଶ୍ୟକ । କିନ୍ତୁ ଯୋଗୁଲୁ ସେକଥା ଶୁଣେ ନାହିଁ । "ଘରେ ଥା, ପିଲାକୁ ପାଳ୍, ଯାହା ମୁଁ ଆଣିବି ସେଇଥିରେ ଚଳିବା, ନ ମିଳିଲେ ଉପାସ ରହୁଥିବା ।"

ସେମିତି ତ ଚଳୁଥିଲା ଛଅ ବର୍ଷଯାକେ । କିନ୍ତୁ ସେତିକରେ ଆଦୌ ଚଳିଲା ନାହିଁ । ସୋମେୟା ଆଉ ଅଭିଆଡ଼ା ହୋଇ ରହିବ କେତେଦିନ ? ତା ବିଭାଘର ପାଇଁ ଯୋଗୁଲୁର ସଞ୍ଚୟତକ ସବୁ ଗଲା ।

ମଝିରେ ମଝିରେ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ଘରକୁ ଟଙ୍କା ପଠାଇବାକୁ ପଡ଼େ, —ଗାଁ ଗୁଡ଼ିଲେ ବି ସମାଜ ତ ଅଛି, ଝିଅଟିର ଶାଶୁଘର ଅଛି, କେତେ ପ୍ରକାର ସାମାଜିକ କର୍ତ୍ତବ୍ୟ ଅଛି, —ନ କଲେ ଲାଜ ।

ଜାନକାମ୍ମାର ପ୍ରଥମ ଝିଅ ଗଙ୍ଗାମ୍ମା ହେବାର ତିନି ବର୍ଷ ପରେ ଆଉ ଗୋଟିଏ ଝିଅ ହେଲା, ଗଙ୍ଗାମ୍ମା, ସେମାନଙ୍କର ଅଲଗା କୁଡ଼ିଆଟିଏ ତୋଳା ହେଲା ଓ ଦିନେ ଯୋଗୁଲୁର ଅନୁମତି ନେଇ ଜାନକାମ୍ମା ବାହାରି ପଡ଼ିଲା ଅନ୍ୟ କେତେଜଣ ସ୍ତ୍ରୀଲୋକଙ୍କ ସଙ୍ଗରେ, ସେମାନଙ୍କ ପରି ସେ ବି କେଉଁ ଭଦ୍ରଲୋକ ପରିବାରଙ୍କ ଘରେ ସକାଳେ ଓ ଉପରଓଳି ବାସନମଜା, ଘରଓଳିଆ, ଲୁଗାଧୁଆ ଆଦି କାମ କରିଦେଇ ଆସୁଥିବ, ମାସକୁମାସ ସେଥିପାଇଁ ପାଉଥିବ ଦରମା, କିଏ ଦିଏ ଦଶ ଟଙ୍କା, କିଏ ବା ପନ୍ଦର ଟଙ୍କା । ଆଗ ଜାନକାମ୍ମାକୁ ମାସକୁ ପନ୍ଦର ଟଙ୍କା ଦରମାରେ ଗୋଟିଏ ଘରେ କାମ ମିଳିଗଲା । ସେ କାର୍ଯ୍ୟ କରିବା ଅଭ୍ୟାସ ହୋଇଗଲା, ତା'ପରେ ସହରର ଅନ୍ୟାନ୍ୟ ଠିକା ଗୃହକର୍ତ୍ତ୍ରୀଙ୍କ ପରି ସେ ବି ଆହୁରି ଆଉ ଯୋଡ଼ିଏ ଘରେ କାମ ପାଇଗଲା, ସେଠୁ ଘରକେ ଦଶଟଙ୍କା ଲେଖାଏଁ ମିଳିଲା । ଓଳିକେ କେଉଁ ଘରେ ଘଣ୍ଟାଏ କେଉଁ ଘରେ ବା ଦେଢ଼ଘଣ୍ଟା କାମ କରିବାକୁ ପଡ଼େ । ଆଗଠୁଁ ତା'ର ଖଟଣି ବଢ଼ିଲା କିନ୍ତୁ ପ୍ରତିମାସରେ ଯୋଗୁଲୁ ଆଣୁଥିବା ପଁଷଠି ଟଙ୍କା ସହିତ ଜାନକାମ୍ମାର ରୋଜଗାର ମିଶିବାରୁ ଆଗଠୁଁ ତା ଘରର ଆୟ ବଢ଼ିଲା । ଜାନକାମ୍ମାର ଦରିଦ୍ରମା ଟଙ୍କା ଛଡ଼ା କାହା କାହା ଘରେ ତାକୁ ଗୁ' ଜଳଖିଆ ବି ମିଳି ଯାଉଥାଏ ଓ କେଉଁଦିନ କାହାର କିଛି ବାସି ଭାତ କି ରୁଟି, କିଛି ତରକାରି, କାହାଘରୁ କାହାର କିଛି ଅଦରକାରି ପନପରିବା, କାହାଠୁଁ କିଛି ଫଟା କି ପୁରୁଣା ଶାଢ଼ୀ କି ସାୟା ବ୍ଲାଉଜ୍ ମିଳି ଯାଉଥିଲା, କେବେ କେଉଁ ଉତ୍ସବ ବେଳେ କାହାଘରୁ ଖଣ୍ଡେ ନୂଆ ଶାଢ଼ୀ ବି ମିଳୁଥିଲା । ସାହି ପଡ଼ିଶାରେ ସେମାନଙ୍କ ଶିଦ୍ଧାଜଣା ବଢ଼ିଲା, କିଏ ହେଲେ ଜାନକାମ୍ମାର ଆଈ, କି ମାଉସୀ, ଖୁଡ଼ୀ କି ଅପା କି ଭଉଜ, କାମକୁ ଗଲାବେଳେ ସେମାନଙ୍କର ତତ୍ତ୍ୱାବଧାନରେ ପିଲାଙ୍କୁ ଗୁଡ଼ିଦେଇ ଆସେ । ପୂର୍ବେ ତା'ର ଅବସ୍ଥା ସେହି ସହରରେ ପହଞ୍ଚି ତା ଆଖି ଆଗରେ ସେହି ଯେଉଁ ରୋଜଗାରର ପନ୍ଥା ଖୋଲିଥିଲା ତହିଁରେ ତା'ର ଆତ୍ମବିଶ୍ୱାସ, ସାହସ ଓ

ଆଶା ଦେଉଥିଲା । କାଳକ୍ରମେ ସେ ତା ସଙ୍ଗେ ମିଶି କାମ କରିବାକୁ ତା’ ଝିଅ ଗଙ୍ଗମ୍ମାକୁ ସଙ୍ଗରେ ନେଇଗଲା, ତା’ପରେ ତା’ର ବଦଳା ହୋଇ କାମ କରିବାକୁ ତାକୁ ଛାଡ଼ି ଦେଲା, ସେତେବେଳକୁ ସମୁଦାୟ ଚାରିଜଣଙ୍କ ଘରେ ସେ କାମ କଲାଣି । କ୍ରମେ ପାଞ୍ଚବର୍ଷ ବୟସରୁ ତା’ର ଦ୍ୱିତୀୟ ଝିଅ ଗଙ୍ଗାମ୍ମା ତା ସଙ୍ଗେ ମିଶି କାମକୁ ଗଲା, ପରିବାରଟିର ରୋଜଗାର ବି ବଢ଼ିଗଲା । ଗଙ୍ଗାମ୍ମାର ଆଠବର୍ଷ ପରେ ଜନ୍ମ ହେଲା ଜାନକାମ୍ମାର ଶେଷ ସନ୍ତାନ—ଝିଅଟିଏ, ନାଁ ରଖାଗଲା ରାଜେଶ୍ୱରୀ ।

ସେତେବେଳକୁ ସେମାନଙ୍କ ଅବସ୍ଥା ଆଗଠୁଁ ଭଲ ହେଲାଣି । ଯୋଗୁଲୁର ପୁଅ ସୋମେୟା ଗାଁ ଜମିକୁ ଭାଗ ଲଗାଇ ଦେଇ ତା’ ସ୍ତ୍ରୀକୁ ନେଇ ଆସାମ ଚାଲିଯାଇଥାଏ, ସେଠି ଗୋଟିଏ କରତ କଳରେ କାମକରି ଭଲ ରୋଜଗାର କରୁଥାଏ, ସେହି ରୋଜଗାର ଟଙ୍କାରୁ କିଛି ଖର୍ଚ୍ଚକରି ଗାଁରେ ମାଣେ ଜମି କିଣି ଭାଗ ଲଗାଇଥାଏ, ଗାଁରେ ତାଙ୍କ ଘରକୁ ଯୋଗୁଲୁର ଅନୁରୋଧରେ ରାଘବାୟା ବୋଲି ଜଣେ ପଡ଼ୋଶୀ ଓ ଭାୟା ଦେଖାଶୁଣା କରୁଥାଏ । ସୋମେୟା ଟଙ୍କା ଜମାଉଥାଏ କେମିତି ଗାଁରେ ଆହୁରି କିଛି ଜମି କିଣି ପାରିବ । ଜାନକାମ୍ମା ବୟସରେ ସୋମେୟାଠୁଁ ଦୁଇବର୍ଷ ସାନ ହେଲେ ବି ତାକୁ ସେ ନିଜ ପୁଅ ପରି ଭଲ ପାଉଥିଲା, ସୋମେୟା ବି ତାକୁ ନିଜ ମା’ ପରି ମାନୁଥିଲା ।

ସେମାନଙ୍କର ଚଳଣି ଅତି କଷ୍ଟୋଟ ଥିଲା, ସେମାନେ ବୁଝୁଥିଲେ ଯେ ନିଜକୁ ପଥର କରି କୌଣସି ଆବଶ୍ୟକର ତାଡ଼ନାକୁ ଦାବି ଦେଇ ପାରିଲେ ଅନେକ ସମୟରେ ନିଜର ମାସିକିଆ ଖର୍ଚ୍ଚକୁ ଆହୁରି କମେଇ ହୁଏ, ତହିଁରେ ଦେହକୁ ଟିକିଏ ବାଧା ପଡ଼ୁ, କ୍ଷତିନାହିଁ; କିନ୍ତୁ ପଇସାଟିଏ ବଞ୍ଚିଲେ କେଡ଼େ କଥା, ପଇସା ତ ଗଛରେ ଫଳେ ନାହିଁ ! ବିଦେଶରେ ପନ୍ଦର ବର୍ଷ ରହି ରହି ସେମାନେ ନିଜ ରୋଜଗାରରେ ଗାଁରେ ଆହୁରି ଅଧମାଣେ ଜମି କିଣି ସାରିଥିଲେ, ଜାନକାମ୍ମାର ନାକରେ କାନରେ ବେକରେ, ଗଙ୍ଗାମ୍ମାର ନାକରେ, ଏପରି ହୋଇ ଅଳ୍ପ ହେଲେ ସୁଦ୍ଧା କିଛି ସୁନା ବି ସାଇତି ରଖି ପାରିଥିଲେ, ହାତରେ ପୁଞ୍ଜି କରି ଅଳ୍ପ କିଛି ରଖିଥାନ୍ତି, ତହିଁରୁ ପଚିଶ ଷାଠିଏ ଟଙ୍କା ପାଞ୍ଚ ଦଶ ହୋଇ ତାଙ୍କ ବସ୍ତିରେ

କାହାକୁ କାହାକୁ କରଜ ଲଗାଇ ଦିଅନ୍ତି, ଋଣ ବୁଡ଼େ ନାହିଁ, ମୂଳ ସହିତ ସୁଧ ଆଦାୟ ହୋଇଯାଏ ଓ ସେମାନଙ୍କ ପୁଞ୍ଜି ବଢ଼େ । ଝିଅ ତିନୋଟି କାଳକ୍ରମେ ତ ବାହା ହେବେ, ସେଥିପାଇଁ ସଞ୍ଚୟ ଲୋଡ଼ା, ତା'ଛଡ଼ା ପଇସା ବଳିଲେ ଗାଁରେ ଆହୁରି କିଛି ଜମି କିଣନ୍ତେ ।

ଯେବେ ହେଉ ଶେଷରେ ସେଇଠି ତ ଶେଷ ଜୀବନ କଟାଇବାକୁ ପଡ଼ିବ ! କିନ୍ତୁ ସଞ୍ଚୟ ଆସିବ ନ୍ୟାୟ୍ୟ ଧର୍ମ ମାର୍ଗରେ ନିଜ ଅର୍ଜନରୁ, ଯୋଗୁଲୁ ଓ ଜାନକାମ୍ମା କୌଣସି ଅସତ୍ ମାର୍ଗକୁ କେବେ ଅନାନ୍ତି ନାହିଁ । ନିଜ ଆଚରଣ ଦ୍ୱାରା ନିଜ ଆତ୍ମମର୍ଯ୍ୟାଦା ଓ ସୁନାମ ଅକ୍ଷୁଣ୍ଣ ରଖି ଚଳନ୍ତି । ଜାନକାମ୍ମା ଯେଉଁ ଘରେ କାମ କରେ ସମସ୍ତେ ଜାଣନ୍ତି ସେ ଚୋରି କରେ ନାହିଁ, ଅନ୍ୟାୟ କାମ କରେ ନାହିଁ, ତା ବ୍ୟବହାର ବି ସୁଗୁଣା ଥାଏ, ତା କାମ ସୁରୁଖ ଓ ଚିକ୍କଣ । ତା'ର ସୁନାମ ଯୋଗୁଁ ଅନେକେ ତାକୁ ତାଙ୍କ ଘରେ କାମ କରିବାକୁ ଡାକନ୍ତି, କିନ୍ତୁ ଏତେ ଘରେ କାମ କଲେ ତାକୁ ବଳେଇବ ବୋଲି ସେ ନିଜେ ମନା କରିଦିଏ । ସେ କାହାଠିଁ କଥା ଶୁଣିଲା ଭଳି ଯେପରି କିଛି କରେ ନାହିଁ, କାହାଠୁଁ ଅପମାନ କି ପଦେ କଟୁ କଥା ବି ସହେ ନାହିଁ, ସେପରି ଶୁଣିଲେ ଚାଲିଆସେ, ଆଉ ଯେତେ ଡାକିଲେ ଯାଏ ନାହିଁ ।

ଏମିତି ଦିନର ଦୁଃଖେ ସୁଖେ ଗଡ଼ି ଚାଲିଥିଲା ସେମାନଙ୍କ ଜୀବନ, ଦେହ କଷ୍ଟ ହେଉଥିଲେ ଯାଏ, ସାଧାରଣ ଅସୁସ୍ଥତା ଧରେ ଆଉ ଛାଡ଼େ, ତା'ପରେ ହଠାତ୍ ଦିନେ—ଚିଠି ଆସିଲା ଯେ ଯୋଗୁଲୁର ପ୍ରଥମା ସ୍ତ୍ରୀର ପୁଅ ସୋମେୟା ଆସାମରେ ଦି'ଦିନ ଝାଡ଼ା ବେମାରୀରେ ପଡ଼ି ମରିଗଲା । କାନ୍ଦି କାନ୍ଦି ପରିବାରଟିଯାକ ଗାଁକୁ ଗଲେ, ଅନ୍ତ୍ୟେଷ୍ଟିକ୍ରିୟା ସାରି ଫେରି ଆସିଲେ, ତାଙ୍କ ଘରକୁ ଦେଖିବାକୁ ପଡ଼ୋଶୀକୁ କହିଦେଇ ଆସିଲେ, ସୋମେୟାର ସ୍ତ୍ରୀ ତା ବାପ ଘରକୁ ଚାଲିଗଲା, ଆଉ ସେ ଫେରିଲା ନାହିଁ । ତା'ର କିଛି ଛୁଆପିଲା ନ ଥିଲେ ।

ଯୋଗୁଲୁ ଓ ଜାନକାମ୍ମାଙ୍କ ଶୋକ ଲାଗି ରହିଲା । "ପୁଅ ତ ଗଲା, ଆମକୁ ଆଉ କିଏ ଦେଖିବ ?" ଯୋଗୁଲୁ କାନ୍ଦି କାନ୍ଦି କହେ, ଜାନକାମ୍ମା ଦିହାଣ ହୋଇ କାନ୍ଦେ ।

ସେତେବେଳକୁ ଯୋଗୁଲୁକୁ ହେଲାଣି ସତୁରି ପାଖ । ଦୁଇ ତିନି ବର୍ଷ ପୂର୍ବରୁ ତା ବୟସ ପଚିଶ ହେଲାଣି ବୋଲି କେହି ଭାବିପାରୁ ନ ଥିଲେ । ସେ ପୁଅ ପାଇଁ ଶୋକ କରୁ କରୁ ଚରଚର ହୋଇ ତା'ର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିବାକୁ ଲାଗିଲା । ନିଶ ଦାଢ଼ୀ ଥିବା ଆବୁ ଆବୁଆ ଦେହ ଦମ୍ଭିଲା ଗମ୍ଭୀର କାମିକା ମଣିଷ, ଦିନବେଳେ ସେ କାମକୁ ଯାଏ, କାନ୍ଦେ ନାହିଁ; କିନ୍ତୁ ମନ ଭିତରେ ଘୂଣ ଖାଉଥାଏ, ବେଳେ ବେଳେ ଅନ୍ୟମନସ୍କ ହୋଇଯାଏ, ଅଭ୍ୟସ୍ତ ହାତ ଆପେ ଆପେ ଅଭ୍ୟସ୍ତ କାମ କରିଯାଉଥାଏ । ଘରକୁ ଫେରିଲେ ତା'ର ଲୁହ ଆଉ ଅଟକେ ନାହିଁ । ପୂର୍ବେ ସେ କାମରୁ ଫେରି ଖଟଣିର ମଜଗ ମେଣ୍ଟାଇବାକୁ ରାତିର ଖୋରାକ ଖାଇଲା ପରେ ଅଳ୍ପ ଟିକିଏ ମଦ ପିଉଥିଲା, ବେଶୀ ପିଇବାକୁ ତା'ର ପ୍ରବୃତ୍ତି ହେଉ ନ ଥିଲା, ମଦୁଆଙ୍କ ଦୁର୍ଦ୍ଦଶା ଦେଖି ସେ ନିଜକୁ ନିଜେ ସଂଯତ କରିଥିଲା; କିନ୍ତୁ ଏଣିକି ତା'ର ସେ ସଞ୍ଜମ ରହିଲା ନାହିଁ । ପୁଅଶୋକ ଭୁଲିବାକୁ ସେ ବେଶୀ ମଦ ପିଇଲା, ଅନେକ ସମୟରେ ରାତିରେ ଖାଦ୍ୟ ବି ପାଟିକି ନେଲା ନାହିଁ, ଖାଲି ମଦ ପିଇଲା, ମାତିଲା, ମଦ ନିଶାରେ ଭାଣିଜାକୁ ଝିଅମାନଙ୍କୁ ଯାହା ପାରି ତା କହିଲା, ମାଡ଼ ମାରିଲା, ନାନାକାଣ୍ଡ କଲା । ନାନା ଦୁଃଖ ଭିତରେ ତାକୁ ସମ୍ଭାଳିବା ଜାନକାମ୍ମାର ଆଉ ଗୋଟାଏ ସମସ୍ୟା ହୋଇଗଲା । ସେ ଧୈର୍ଯ୍ୟ ଧରି ପିଠିରେ ସହି ନାନା ଦେବ-ଦେବୀଙ୍କି ଡାକି ତା'ର ଯତ୍ନ ନେବାକୁ ଲାଗିଲା, ସେ ନ ଶୁଣୁ ପଛେ, ତାକୁ ବାଟକୁ ଆଣିବାକୁ ଚେଷ୍ଟା କଲା ।

କିନ୍ତୁ ଯୋଗଲୁ ମନରେ ଯେପରିକି ଘା' ପଶିଯାଇଛି, ମଦ ପିଇଲେ ବି ସେ ହାହାକାର ଯାଉ ନାହିଁ, ନାନା ରୂପ ଧରି ଆହୁରି ଆହୁରି କୁହୁକୁହୁଛି, କଳି ମେଲୁଛି, ତା ଭିତରଟାକୁ ଜାଳୁଛି । ସୋମେୟା ବଞ୍ଚିଥିଲା ବେଳେ ତା'ପ୍ରତି ଯୋଗୁଲୁର ଏ ଆସକ୍ତି, ଯେଗୁଲୁ ଦିନେ ବି ଭାବି ନ ଥିଲା, ମୁଣ୍ଡକୁ ହାତ ପାଇଲାଦିନୁଁ ସୋମେୟା ତ ଅଲଗା ମଣିଷ, ଦିହେଁ ନିଜ ପରିଶ୍ରମରେ ବଞ୍ଚିବା ଲୋକ, କେହି କାହା ଉପରେ ନିର୍ଭର କରନ୍ତି ନାହିଁ, ଓ ସୋମେୟା ତ ରହିଥିଲା ଦୂର ଆସାମରେ । ତା'ଠୁଁ ଚିଠି ଖଣ୍ଡିଏ ପ୍ରତି ମାସରେ ବି ମିଳୁ ନ ଥିଲା । କିନ୍ତୁ ସେ ଆଶା ରଖିଥିଲା ଯେ ଦିନ

ଆସିବ ଯେତେବେଳେ ସୋମେସ୍ୱା ତା ଗାଁରେ ସେମାନେ ସମସ୍ତେ ପୋଷି-ହେଲା ପରେ ଯଥେଷ୍ଟ ଚାଷ ଜମି କିଣି ପାରଥିବ, ଗାଁକୁ ଫେରି ଚାଷ କରୁଥିବ, ସେତେବେଳେ ଯୋଗୁଲୁ ବି ସ୍ତ୍ରୀକୁ ନେଇ ଗାଁରେ ରହିବ, ଝିଅମାନେ ତ ପର ଘରକୁ ଯାଇଥିବେ, ଯେ ବାକି ଥିବେ ବାହାହେବେ, ସୋମେସ୍ୱାର ପୁଅ ଝିଅ ହୋଇଥିବେ, ଆନନ୍ଦରେ ଶାନ୍ତିରେ ଆପଣା ଘରେ ଯୋଗୁଲୁର ଦିନ କଟିଯିବ । କିନ୍ତୁ ଖାଲି ସେତିକି ପାଇଁ ନୁହେଁ,—ତାକୁ ଲାଗୁଥାଏ ତା ଦେହରେ ପ୍ରାଣ ଥାଉ ଥାଉ ତା ଜୀବନ ଯେପରିକି ସୂର୍ଯ୍ୟଆଡ଼ୁ ଗ୍ରହଣ-ପଡ଼ିଛି, ଚାରିଆଡ଼ ଅନ୍ଧାର, ଫାଙ୍କର, ଶୂନ୍ଶାନ୍, ତା'ର କେହି ନାହିଁ, କିଛି ନାହିଁ, ସେ ନିରାଶ୍ରୟ ନିଃସମ୍ବଳ ଭଙ୍ଗାରୁଜା ବୁଢ଼ା ଲୋକଟାଏ, ସୋମେସ୍ୱା ସଙ୍ଗେ ସଙ୍ଗେ ତା'ର ସବୁ ସରିଯାଇଛି ।

କାନ୍ଦି କାନ୍ଦି ଶୋକ କରି କରି ବେଶୀ ବେଶୀ ମଦ ପିଇ ପିଇ ଅତି ଚଞ୍ଚଳ ତା ସ୍ୱାସ୍ଥ୍ୟ ଝଡ଼ପଡ଼ିଲା, ତା' ଦୃଷ୍ଟିଶକ୍ତି କ୍ଷୀଣ ହୋଇ ହୋଇ କ୍ରମେ ଆଖିକି ଆଉ ଭଲ ଦିଶିଲାନି ନାହିଁ, ଦେହରେ ଗଣ୍ଠି ଗଣ୍ଠିକେ ଦରଜ ବାହାରି ପଡ଼ିଲା, ହାତ ଟେକିଲେ କାଟେ, ଚାଲିବା ବି ମହା କଷ୍ଟ, ପାଦ ଓ ଗାଲ ଫୁଲିଲା, ଛାତିରେ ବଥ ବାହାରିଲା, ହାତ ଥରିଲା, ନାନା ଉପସର୍ଗ ବାହାରିଲା । ସେତେବେଳକୁ ସବୁ ମଜୁରି, ଦରମା ଆଗଠୁଁ ଦେଢ଼ଗୁଣ ଦୁଇଗୁଣ ବଢ଼ିଲାଣି, ଯଦିଓ ଜିନିଷପତ୍ର ଦରଦାମ୍ ବଢ଼ି ଚାଲିଛି ହୁ ହୁ ହୋଇ, ଅଭାବ ଆହୁରି ବେଶି ବାଧୁଛି । ସେହି ସମୟରେ ସେ କାମ କରିବାକୁ ଅସମର୍ଥ ହେଲା, ତା' ଯୋଗୁଁ ପରିବାରଟିର ଯେଉଁ ରୋଜଗାର ଓ ଭରସା, ସେତିକି ବୁଡ଼ିଲା, ଏଣିକି ରହିଲା ଏକୁଟିଆ ଜାନକାମ୍ମା ଓ ତା' ଝିଅମାନଙ୍କର ଖଟଣିରୁ ଯେଉଁ ମାସିକ ରୋଜଗାର, ସେତିକି ।

ଯୋଗୁଲୁ ଯେତେ ରାଗିଲେ ପାଟିକଲେ କି କାନ୍ଦିଲେ ବି ପଇସା ଅଭାବରୁ ତା' ମଦଖିଆ ବନ୍ଦ ହେଲା, ତଥାପି ତାକୁ ଖୁସି କରିବା ପାଇଁ କେବେ କେବେ ଯଞ୍ଜ ପରେ ଜାନକାମ୍ମା ତା' ପାଇଁ ତା ଯାହାରୁ ଅଳ୍ପ ଅଳ୍ପ ମଦ କିଣି ଆଣି ତାକୁ ଦିଏ । ଦାମୀ ଡାକ୍ତରି ଔଷଧ କିଣିବାକୁ ତା'ର ପଇସା ନାହିଁ, ତଥାପି ରିକ୍ସା ଭଡ଼ା ଦେଇ ବୁଢ଼ାକୁ ଥରେ ନେଇ ସେ ସରକାରୀ ଦାତବ୍ୟ ଚିକିତ୍ସାଳୟକୁ ଯାଏ, ଅନ୍ୟମାନଙ୍କ ମୁଣ୍ଡିଆଙ୍କ ପରି

ସେଠି ଯାହା ଔଷଧ ମିଳେ ସେଇଆ ଖୁଆଏ, ଶସ୍ତା ପଡ଼ିବ ବୋଲି ସାହିର କେଉଁ କେଉଁ ବ୍ୟକ୍ତିଙ୍କଠୁଁ କି କଣ ଔଷଧ କିଣି ଦିଏ, କାହାଠୁଁ ଶୁଣି କେଉଁ ଜଡ଼ିବୁଟି ଆଣି ଦିଏ, କେତେ ପୂଜା ଉପାସ ବି କରେ, କାଳେ ତା ସ୍ୱାମୀ ଦେହ ଭଲ ହେବ । ତା'ର କିଛି କିଛି ଉପସର୍ଗ ଭଲ ହୋଇଯାଏ, ଜାନକାମ୍ମାର ଆଶା ବଢ଼େ, କିନ୍ତୁ ତା ଆଖିକୁ ଆଉ ଦିଶିଲା ନାହିଁ, ସେ କୌଣସି କାମ କରି ପାରିଲା ନାହିଁ, ହାତ ଧରି ନେଲେ ଠିକ ଠିକ ଅତି ଧୀରେ ଧୀରେ କଷ୍ଟେମଷ୍ଟେ ପାହୁଣ୍ଡ ପକାଇ ପକାଇ ଯା'ଆସ କରିପାରେ ।

ଡାକ୍ତରଖାନାରେ ଥରେ ଜଣେ ଡାକ୍ତର ପରାମର୍ଶ ଦେଲେ, ଯୋଗୁଲୁର ଆଖିରେ ପରଳ ହୋଇ ଯାଇଛି, ଅପରେସନ୍ କରିଦେଲେ ଆଖିକୁ ଦିଶିବ, ସରକାରୀ ଡାକ୍ତରଖାନା, ପଇସା ପଡ଼ିବ ନାହିଁ । ଯୋଗୁଲୁ ରାଜି ହେଲା, ଗୋଟିଏ ଆଖି ଅପରେସନ୍ କରାଗଲା, ବ୍ୟାଣ୍ଡେଜ୍ ବନ୍ଧାଗଲା, ବାରମ୍ବାର ମନା କରାଗଲା ତା'ପରେ ତହିଁରେ କେହି ହାତ ଦେବେ ନାହିଁ । କେହି ଛୁଇଁଦେଲେ ସବୁ ବିଗିଡ଼ିଯିବ । କିନ୍ତୁ ଡାକ୍ତର କହିଥିବା ମିଆଦି ଦିନ ସରି ଆସୁ ଆସୁ ଯୋଗୁଲୁର କୁତୂହଳ ଯୋଗୁଁ ବା ହାତ ଖୁଜିବୁଜୁ ଆଉ ସମ୍ଭାଳି ହେଲା ନାହିଁ । ହାତ ଠେକିଲେ କାଟୁଛି, ଆଙ୍ଗୁଠି ଥର ଥର, ତହିଁରେ ସେ କଷ୍ଟେ ମଷ୍ଟେ ଆଖିର ବନ୍ଧନ ଟିକିଏ ପେଲ ଦେଇ ପରଖିବାକୁ ଚାହେଁ ସତକୁ ସତ ଦେଖି ପାରୁଛି ନା ନାହିଁ । ତା' ଆଙ୍ଗୁଠିର ଟିପଟାଏ ସେହି ଡାହାଣ ଆଖିରେ ଟିକିଏ ବାଜିଗଲା, କାଟିଲା, ପାଣି ବାହାରିଲା, ସେ ଆଙ୍ଗୁଠି ଓଟାରି ଆଣିଲା, ଡାକ୍ତରବାବୁଙ୍କ ସତର୍କବାଣୀ ମନେ ପକାଇଲା । କିନ୍ତୁ ସେ ଆଖିଟା ପୂଜେଇ ଗଲା, ପୁଣି ଡାକ୍ତର ବହୁତ ଚେଷ୍ଟା କରି ଘା ଶୁଖେଇ ଭଲ କଲେ ସିନା, କହିଲେ "ନିଜେ କିଛି ଅବହେଳା କରିବାରୁ ଏ ଫଳ ଭୋଗିଲ, ଏ ଆଖିଟା ଗଲା ।"

ଆଉ ଯେତେ ଯେ କହିଲେ ଯୋଗୁଲୁ ତା'ର ଆର ଆଖିର କାଟାରକୁ ଅପରେସନ୍ କରିବାକୁ ରାଜି ହେଲା ନାହିଁ । ସେ ଆଖିର ରୋଗ ସେତିକିରେ ବି ଅଟକିଲା ନାହିଁ, ଭିତରେ ଭିତରେ ଆହୁରି କ'ଣ କ୍ଷୟ ହୋଇ ହୋଇ ଚାଲିଲା । କିଛି ବର୍ଷ ପରେ ଯେତେବେଳେ ପୁଣି ଯୋଗୁଲୁ ରାଜି ହେଲା ଯେ ଅନ୍ତତଃ ବାଁ ଆଖିଟାକୁ ଡାକ୍ତର କିଛି କରିପାରିଲେ ତା

ଦୃଷ୍ଟିଶକ୍ତି ଲେଉଟାଇ ଦେଲେ ଯେ ଅନ୍ଧ ହୋଇ ବସିଣି ହୁଅନ୍ତା ନାହିଁ ଓ ଜାନକାମ୍ମା ଜଣେ ବିଖ୍ୟାତ ଆଖି ଡାକ୍ତରଙ୍କ ଘରେ କାମ କରିବାକୁ ଲାଗିଲା, ସେ ଡାକ୍ତର ଯୋଗୁଲୁର ସେ ଆଖିକୁ ପରୀକ୍ଷା କଲେ ଓ କହି-ଦେଲେ ଯେ ସେ ବହୁତ ଡେରି କରି ଦେଲଣି, ସେ ଆଖିଟି ସମ୍ପୂର୍ଣ୍ଣ ନଷ୍ଟ ହୋଇ ଗଲାଣି, ଆଉ ତାକୁ ଅପରେସନ୍ କରି କିଛି ଫଳ ହେଲା ପରି ତାଙ୍କୁ ଦିଶୁନାହିଁ, କିନ୍ତୁ ଏପରି ବି ସମ୍ଭବ ଯେ ସେପରି କଲେ ଝପସା ଝାପ୍‌ସା ହୋଇ ପାଖରୁ ଟିକିଏ ଦିଶିପାରେ । ସେହି କ୍ଷୀଣ ସମ୍ଭାବନା ଯୋଗୁଁ ଆଖି ଅପରେସନ୍ କରିବାକୁ ସେ ମନା କଲେ, କିନ୍ତୁ ଯୋଗୁଲୁ ଓ ଜାନକାମ୍ମା ଦିହେଁ ତାଙ୍କୁ ବହୁତ ଅନୁନୟ କଲେ, ଅପରେସନ୍ ହଉ, ଯଦି ଟିକିଏ ବି ଦେଖି ହେବ ତେବେ ବହୁ ଭାଗ୍ୟ । ଡାକ୍ତରଖାନାରେ ରଖି ବହୁତ ଯତ୍ନ ନେଇ ସେ ଡାକ୍ତର ଅପରେସନ୍ କଲେ, ଜଗି ରହିବା ବିଷୟରେ ଜାନକାମ୍ମା ଓ ତା ଝିଅ ରଙ୍ଗମ୍ମାଙ୍କୁ ଟିକିନିଖି ଉପଦେଶ ଦେଲେ, ନିଜେ କଡ଼ା ନିଘା ରଖିଥାନ୍ତି । କିନ୍ତୁ କିଛି ଫଳ ହେଲା ନାହିଁ, ସେ ଆଖି ଯେଉଁ ଅନ୍ଧ ଥିଲା ସେଇଆ ରହିଲା ।

ଜାନକାମ୍ମାର କୁଡ଼ିଆରେ ବସି ରହିଲା ଅନ୍ଧ ଅଥର୍ବ ବୁଢ଼ା ଯୋଗୁଲୁ, ତା ବୟସକୁ ପଛରେ ପକାଇ ତା ବାର୍ଦ୍ଧକ୍ୟ ଆଗେଇ ଯାଇଛି, ମାଂସପେଶୀଗୁଡ଼ିକ ଲୁଜ ପଡ଼ିଛି, ଦେହ ଅଚଳ, ଅବଶ, —କିଛି ପ୍ରୟୋଜନ ହେଲେ ସେ ଡାକେ, ସ୍ତ୍ରୀ କି କେଉଁ ଝିଅଟି ଥିଲେ ସେମାନେ ଶୁଣନ୍ତି, ଆସନ୍ତି । ଜାନକାମ୍ମା ତାକୁ ସେହିପରି ନିଘା ଦିଏ, ଯୋଗୁଲୁ କେବଳ ତା ସ୍ୱାମୀ ସେତିକି ନୁହେଁ, ସେ ତା'ର ସବୁଠୁଁ ସାନ ସନ୍ତାନ, ନିଃସହାୟ ଶିଶୁଟିଏ । କିନ୍ତୁ ସେ ଯେତେ ଅସହାୟ ଅସମର୍ଥ ହେଉ ପଛେ, ସେ ହିଁ ତା'ର ସଂସାରରେ ସବୁଠୁଁ ବଳି ଆପଣାର, ସେ ହିଁ ତା'ର ଗୌରବ । ସ୍ୱାମୀ କହିଲେ ହେଉ ହେଲା ଦିନୁଁ ସେ ଯାହା ଯାହା ଶୁଣି ଆସିଛି, କଳ୍ପନା କରିଛି, ତା ମନ ଭିତରେ ଯୋଗୁଲୁ ବିଷୟରେ ସେହି ଭାବ, ଆଖି ଖୋଲି ଦେଖିଲେ ସେ ସ୍ୱାମୀଟି ଯେପରି ଦିଶୁ ପଛେ । ଗାଁରେ ସେ ରକ୍ଷଣଶୀଳ ହିନ୍ଦୁ ପରିବାରରେ ବଢ଼ିଥିଲା, ବୋହୂ ହୋଇ ଆସିଥିଲା, ତା ମନ ଭିତରେ ବସା କରିଥିଲା ଶାସ୍ତ୍ର ପୁରାଣର ନାନା କାହାଣୀ.

ଉପଦେଶ, ଉଦାହରଣ, ମାନ୍ତ ଅମାନ୍ତ, ଧର୍ମ ଅଧର୍ମ ବିଷୟରେ ନାନା କଟକଣା କରାଯାଇଥିବା ଧାରଣା, ନାନା ପୂଜାଉଷା ବ୍ରତ ଉପାସ ସେ ଅନ୍ୟମାନେ କରିବାର ଦେଖିଥିଲା, ନିଜେ ବି ତହିଁରେ ଭାଗ ନେଇଥିଲା । ସେହି ଧାରଣା ଭିତରେ ସ୍ୱାମୀ କହିଲେ ମନେ ପଡ଼ୁଯାଉଥିଲା ଧର୍ମ, ଓ ତହିଁରେ ତା'ର କର୍ତ୍ତବ୍ୟ, ସବୁବେଳେ ମନେ ରହିଥିଲା—ଧର୍ମ ଲଙ୍ଘିଲେ ପାପ, ପାପ କଲେ ଭଗବାନ ଦଣ୍ଡ ଦେବେ, ସମାଜ ଜାଣିଲେ ମର୍ଯ୍ୟାଦା ଯିବ ।

କିନ୍ତୁ ତଥାପି କ'ଣ ଅନ୍ୟମାନେ ତା କରନ୍ତି ନାହିଁ ? କରନ୍ତି, ସେ ଜାଣେ, କିନ୍ତୁ ମୂଳରୁ ସେ ଡରକୁଳୀ, ଅଡ଼ୁଆରେ ପଶିବାକୁ ଡରେ । "ସେ ଯାହା କରୁ, ଆମର କି ଯାଏ ?" ସେ ଭାବେ, "ନିଜେ ଠିକ୍ ରହିଲେ ନିରାପଦ" । ଏ ସହରକୁ ଆସି ଏ ଗନ୍ଧିଆ ବାରମିଶା ଡେରଗୋଳି ଦରିଦ୍ର ବସ୍ତିରେ ସଂସାର କରି ସ୍ୱାଧୀନ ଭାବେ ପଦାକୁ ବାହାରି ନାନା ଅଡ଼ୁଆ ଘରେ କାମ କଲା ଦିନଠୁଁ ତା ନିଘାରେ ଅନେକଙ୍କର ଉଚ୍ଛୃଙ୍ଖଳ ଜୀବନ ପଡ଼ୁଛି,—ସେ ପରୀ ନୁହେଁ କି ଗୋଷ୍ଠୀ ବି ନୁହେଁ, କାହାକୁ ମୋହିତ କଲାଭଳି ବେଶ ହୁଏ ନାହିଁ, ପରିଶ୍ରମ କରିବାକୁ ହିଁ ପଦାକୁ ବାହାରେ, କିନ୍ତୁ ତା ଦେହରେ ସ୍ୱାସ୍ଥ୍ୟ ଓ ଯୌବନର ଶ୍ରୀ ଅଳୁଟ ରହିଥାଏ, ମୁହଁରେ ଲାବଣ୍ୟ ଥାଏ, ଆନ୍ଧ୍ର ଦେଶର ହିନ୍ଦୁ ସଧବାର ଅପରିହାର୍ଯ୍ୟ ବାଧ୍ୟତାମୂଳକ ଭୂଷଣ ବୋଲି ତା ମୁଣ୍ଡରେ ସେ ଖୋଷି ଦେଇଥାଏ ଫୁଲଟିଏ ବା ଦଅଣା ପଇସାଗୁଡ଼ାଏ, ଯାହା ମିଳୁ । ସେହି ରୀତି ସେହି ସଂସ୍କୃତି ଅନୁଯାୟୀ ସେ ମୁଣ୍ଡ କୁଣ୍ଡାଇଥାଏ, ମୁଣ୍ଡ ବାନ୍ଧିଥାଏ । ପଦାରେ ସେ ଯାହକୁ ତାକୁ ନିଜ ଦୁଃଖ ନିଜ ସମସ୍ୟା ଗପେ ନାହିଁ, ସବୁ ନିଜ ଭିତରେ ରଖେ, ତା ମୁହଁ ଦେଖି ଜାଣିହୁଏ ନାହିଁ ତା'ର କିଛି ବିଶେଷ ସମସ୍ୟା ଅଛି ବୋଲି, ଏପରିକି ସେ ଖାଇଛି କି ଉପାସ ଅଛି ବୋଲି । ପଦାରେ ନାନା ସମୟରେ କେତେ ଲୋକ ତା'ର ପିଛା ଧରିଥିଲେ, କେତେବେଳେ କିଏ ବା କ'ଣ ପ୍ରଲୋଭନ ଦେଖାଇଥିଲା, କିନ୍ତୁ ଆଡ଼େଇ ହୋଇ ସେ ନିଜ ବାଟରେ ଚାଲିଯାଇଛି, କେହି ଅତି ବଳେଇଲେ ତାକୁ ଫିଁ କରିଛି, ଶୋଧିଛି, ଧମକେଇଛି ଓ କାହା ଘରେ

କାମ କରିବାକୁ ଯାଇ ସେଠି ସେଭଳି ବିପଦର ଲେଶ୍‌ମାତ୍ର ସୂଚନା ଦେଖିଲେ ସେ ଘରର ଆଉ ପାଖ ମାଡ଼ନାହିଁ । ତା ମନଭିତରେ ସଂଯମ ଯେ ସବୁବେଳେ ଟାଣ ହୋଇ ରହିଥାଏ ସେପରି ନୁହେଁ, କେତେଥର ହୁଗୁଳିଯାଏ, ତାକୁ ଲୋଭେଇ ରହିଥିବା କେଉଁ ପୁରୁଷ ପ୍ରତି କେତେ-ବେଳେ ତା ମନରେ ଆସକ୍ତି ଉପୁଜୁଛି, ତା ରକ୍ତ ତାତି ଉଠିଛି ଓ ମନ ଖୋଜୁଛି ସେ ତା ପ୍ରବୃତ୍ତିର ଡାକରେ ଭସିଯିବ, କିନ୍ତୁ ସଙ୍ଗେ ସଙ୍ଗେ ପୁଣି ତା ଛାତି ଭିତର ଗୁଡ଼ୁଁ କରୁଛି, —ମନେ ପଡ଼ୁଛି ତା ହେବ ପାପ, ଯଜ୍ଞବେଦରେ ଯମ ତାଙ୍କ ଭଉଣୀ ଯମୀକୁ ଚେତେଇଲା ଭଳି ତା ନିଜ ମନ ତାକୁ ଚେତେଇଛି, —ଯେଉଁ ଜଙ୍ଗଲିଆ ଅନ୍ଧାରୁଆ ଗୁମ୍ଫା ଭିତରକୁ ଗଲେ ବି କୌଣସି ପାପ କେହି ଲୁଚେଇ ପାରିବ ନାହିଁ, ସବୁଠିଁ ଭଗବାନ ଅଛନ୍ତି, ଅନେଇଛନ୍ତି, ଦେଖିବେ, ସେ ତ ନିଜ ଅନ୍ତର ଭିତରେ ଥାଇ ବି ଦେଖୁଛନ୍ତି,—ସେଜାଣ ? ତା ପାଟି ଶୁଖି ଅଠା ଅଠା ହୋଇଛି, ଆଖି ଓଠ ତାତି ଯାଉଛି, ଛାତି ଦମ୍ ଦମ୍ ଉଠିଛି ପଡ଼ୁଛି, କିନ୍ତୁ ସେ ନିଜକୁ ରୋକି ଦେଉଛି, ଭସି ଯାଉନାହିଁ । ସାହିଲୋକ ଭାବନ୍ତି ଅନ୍ୟମାନଙ୍କ ପରି ସେ ବି କାହା କାହା ସଙ୍ଗେ ସେପରି ସମ୍ପର୍କ ରଖୁଥିବ ପରା, କିଛି ସେପରି ଶୁଣନ୍ତି ନାହିଁ ସତ ତଥାପି କଳ୍ପନା କରନ୍ତି, କିନ୍ତୁ ଖୋଲାଖୋଲି କରନ୍ତି ନାହିଁ କି ତାକୁ କିଛି ପଚାରନ୍ତି ନାହିଁ । ଯେ ଯାହାହେଉ, କାହାର କି ଗରଜ ?

ଅନ୍ଧ ଅଥର୍ବ ସ୍ୱାମୀ, ଘରେ ଖାଇବାକୁ ଚଳିବାକୁ ଆହୁରି ତିନି ଜଣ, ସେ ଓ ତିନି ଝିଅ, —ଆଗରେ ନାନା କର୍ତ୍ତବ୍ୟ, ଝିଅ ତିନିଙ୍କି ବାହା ଦେବାକୁ ପଡ଼ିବ, ଗାଁରେ ଘର ଭାଙ୍ଗି ପଡ଼ୁଛି, ନୂଆ କରି ତୋଳିବାକୁ ପଡ଼ିବ, ଯେପରି ମୁଣ୍ଡ ଗୁଞ୍ଜିବାକୁ ସହରରେ ସ୍ଥାନ ଟିକିଏ ମିଳିବ, —ଏ ସହରରେ ଏ ବେଆଇନ୍ କୁଡ଼ିଆ-ବସ୍ତି କେତେବେଳେ ଯେ ସରକାର ଭଙ୍ଗେଇଦେବେ ଜଣାନାହିଁ, ବାରମ୍ବାର ଧମକାନ୍ତି ଉଠ ଉଠ, ଭାଙ୍ଗ, ହାଉଯାଉ ଲାଗିଯାଏ, ପୁଣି କେମିତି ଥମ୍ବିଯାଏ, —ଗାଁରେ କିଛି ଚାଷଜମି କିଣିବାକୁ ପଡ଼ିବ, ଜମିର ମୂଲ୍ୟ ହୁ ହୁ ବଢ଼ୁଛି, —ତହିଁରେ ତା'ର ନଅଣିଆ ଅର୍ଜନ, —ମା' ଓ ଦି' ଝିଅ ମିଶି କାମ ବାଣ୍ଟିନେଇ

କୋଡ଼ିଏଟି ଘରେ କାମ କରୁଥିଲେ । ମାସକୁ ଟଙ୍କା ତିନିଶହ ମିଳୁଥିଲା । ମହରଗ ଯୁଗରେ ଖାଲି ବଞ୍ଚି ରହିବାକୁ ଖାଇ ତହିଁରୁ ବି ଅଳ୍ପକିଛି ସଞ୍ଚୟ ସେ କରି ଆସୁଥିଲା, କିନ୍ତୁ ତହିଁରେ ନାନା ଘଣାଆ ବାରମ୍ବାର ଫିଟୁଥାଏ, —ବୁଢ଼ାର ଚିକିତ୍ସା ପାଇଁ ଖର୍ଚ୍ଚ, ମଝିରେ ମଝିରେ ତା ନିଜର କି ପିଲାଙ୍କ ଅସୁସ୍ଥତା ଯୋଗୁଁ ଔଷଧ ଖର୍ଚ୍ଚ, ଗାଁର ବନ୍ଧୁବାନ୍ଧବଙ୍କ ବିଭା କି ଶ୍ରାଦ୍ଧ ଯୋଗୁଁ ଖର୍ଚ୍ଚ, ପ୍ରତି ବର୍ଷ ଅନ୍ତତଃ ଦୁ'ଥର ଗାଁକୁ ଯିବାଆସିବା ଖର୍ଚ୍ଚ ଓ ମଙ୍ଗଳ କାମନା କରି ନାନା ପୂଜା ଉତ୍ସବ ପାଳିବା ଯୋଗୁଁ ଖର୍ଚ୍ଚ, ଏମିତି କେତେ ପ୍ରକାର । ଜାନକାମ୍ମା ତା ଦୁର୍ଭାଗ୍ୟ କଥା ଭାବେ, ମନେ ଟିକାଏ ବଞ୍ଚିଥାନ୍ତେ ଭଲ ତାର ସେ ପୁଅ ଗୁଡ଼ିକ ! କେଡ଼େ କେଡ଼େ ଭେଣ୍ଡା ହୁଅନ୍ତେଣି ! କେତେ ରୋଜଗାର କରୁଥାନ୍ତେ ! ତାହେଲେ ତାକୁ କ'ଣ ଏ ଅବସ୍ଥା ଭୋଗିବାକୁ ପଡ଼ିଥାନ୍ତା ! ସୋମେୟା ବି ଚାଲିଗଲା ! ତା ନିଜର ସେହି ଗୁଡ଼ିକ ପୁଅ, କେହି ଦଶଟି ଦିନ ବି ବଞ୍ଚିପାରିଲା ନାହିଁ, —ସେମାନଙ୍କ ଠିକ ଠିକ ମୁହଁଟିମାନ ବହୁକାଳ ତାକୁ ଅଥୟ କରୁଥିଲା, ସୋମେୟାର ମୃତ୍ୟୁ ପରେ ସେମାନଙ୍କୁ ସେ ବେଶୀ ବେଶୀ ଝୁରୁଥିଲା, କିନ୍ତୁ ପୁଣି ମନକୁ କାଠ କରି ନିଜକୁ ବୁଝାଉଥିଲା, —"ମୁଁ ବସି ଝୁରିହେଲେ ଏମାନଙ୍କୁ ଅନେଇବ କିଏ ?"

ମଝିରେ ମଝିରେ ସେ ବେମାର ପଡ଼େ, ଜର, ଝାଡ଼ା, ପେଟବଥା, ଦେହବଥା, ଯେତେବେଳେ ଯାହା । ଜର ଦେହରେ ବି ସେ ଯାଇ କାମ କରିଦେଇ ଆସେ । ଶୀତଦିନେ ଭୋର୍‌ରୁ ଶୀତରେ ଥରି ଥରି ବାହାରି, ଝଡ଼ ବର୍ଷା ଦିନେ ତିନ୍ତି ତିନ୍ତି କୁଙ୍କୁଡ଼ି କାଙ୍କିଡ଼ି ସେ ଯାଏ କାମ କରେ । ସେ ନିଜ ଦାୟିତ୍ୱ ବୁଝେ,—"ସେମାନେ ତ ମତେ ଅନେଇଁଥିବେ, ନ ଗଲେ କେଡ଼େ ହଇରାଣ !" କିନ୍ତୁ ଖାଲି ସେତିକ ଯୋଗୁଁ ନୁହେଁ । ଭଲ କାମ କରେ ବୋଲି ତା'ର ସୁନାମ ଅଛି ସିନା, କିନ୍ତୁ ଏ ସହରରେ ସେଭଳି କାମ କରିବାକୁ ଏକା ସେ ଓ ତା ଝିଅମାନେ ଅଛନ୍ତି ତାହା ତ ନୁହେଁ, ବର୍ଷକୁବର୍ଷ ଆନ୍ଧ୍ର ଦେଶରୁ ସେଥିପାଇଁ ଆହୁରି କେତେ ଲୋକ ଆସି ପହଞ୍ଚିଲେଣି, ଆହୁରି ଆସୁଛନ୍ତି । ଓଡ଼ିଶାର ନାନା ଅଞ୍ଚଳରୁ ବି ସେପରି ଲୋକ ଆସନ୍ତି, ବିଶେଷତଃ ଆଦିବାସୀ । ତହିଁରୁ ଅଧିକାଂଶ ଲାଗିଯାଆନ୍ତି କୁଲିକାମରେ ସତ, ତଥାପି କାହା ଘରେ ଠିକା କାମ

କରିଦେବାକୁ ବି କେହି କେହି ମିଳନ୍ତି । ନିଜ ଅଭିଜ୍ଞତାରୁ ଜାନକାମ୍ମା ଜାଣେ, ଲୋକେ ନିଜ ଘରର ପୁରୁଣା ଠିକା ଚାକରାଣୀଟିକୁ ବଦଳେଇବାକୁ ସହଜରେ ଛାଡ଼ି ହୁଅନ୍ତି ନାହିଁ ସତ, ତା ପ୍ରତି ବିଶ୍ୱାସ ଓ ମମତା ଆସିଯାଇ-ଥାଏ, କିନ୍ତୁ ତଥାପି ଏ କାମ ପ୍ରତିଯୋଗିତାରୁ ମୁକ୍ତ ନୁହେଁ, ଚାକରାଣୀ ଯଦି କାମ ଖରାପ କଲା, କି ମଝିରେ ମଝିରେ ନ ଆସିଲା, ଘରର ମାଲିକ ଅନ୍ୟ ଲୋକ ଖୋଜନ୍ତି ନିଯୁକ୍ତ କରନ୍ତି, ପୁରୁଣା ଚାକରାଣୀର ସୁନାମ ବି ଯାଏ । କିନ୍ତୁ ଯେତେ ଠିକ ଠିକ କାମ କଲେ ବି ଦିନେ ଦିନେ ଜାନକାମ୍ମା ବେମାର ହୋଇ ବିଛଣାରେ ପଡ଼ିରହେ, ତା ବଦଳା ହୋଇ କାମ କରିଯିବାକୁ ଗୋଟିଏ କେଉଁ ଝିଅକୁ ବରଗିଦିଏ ।

ମା'ର ଲଙ୍ଗୁଡ଼ି ପରି ସଙ୍ଗେ ସଙ୍ଗେ ଗୋଡ଼ାଇ ଗୋଡ଼ାଇ ରାଜେଶ୍ୱରୀ ପାଞ୍ଚବର୍ଷ ଦିନୁଁ ମା ସଙ୍ଗେ ମିଶି କରୁଥିଲା, ତାକୁ ନଅବର୍ଷ ହେଲାବେଳକୁ ସେ ଏକୁଟିଆ ମା'ର ବଦଳା ହୋଇ କାମ କରି ପାରିଲାଣି । ଲୋକେ ବିରକ୍ତ ହୁଅନ୍ତି, ଯେତେହେଲେ ଜାନକାମ୍ମା ପରି କାହିଁ ସେ କାମ କରିବ ? ବଡ଼ଝିଅ ଦିହେଁ ମା' ପରି କାମ କରନ୍ତି, କିନ୍ତୁ ସବା ବଡ଼ ରଙ୍ଗାମ୍ମା ମା'ର ବଦଳା ହୋଇ କାମ କରିବାକୁ କହିଲେ ଚିଡ଼ଚିଡ଼ ହୁଏ, କହେ "ମୁଁ ଯେତେ ଘରେ କାମ କରୁଛି ମତେ ତ ସମୟ ଅଣ୍ଟୁ ନାହିଁ ।" ପୁଣି ତା ଉପରେ ଅନ୍ୟ ଘରେ କାମ କେତେବେଳେ କରିବ ?" ତାକୁ କୋଡ଼ିଏ ବର୍ଷ ହେଲାଣି, ସେ ଗଙ୍ଗାମ୍ମା କି ରାଜେଶ୍ୱରୀ ପରି ପିଲାଦିନୁଁ ମା' ବାପାଙ୍କର ବାଧ୍ୟ ସନ୍ତାନ ହୋଇ ଚଳି ନାହିଁ, ତାଙ୍କ ମୁହଁ ଉପରେ ଜବାବ୍ ଦେଇ, କଳି କରି, ଗାଳିମନ୍ଦକୁ ନ ଡରି ସେ କାମରୁ ଫେରି ସାଙ୍ଗଝିଅଙ୍କ ସଙ୍ଗେ ମିଶି ଏଣେ ତେଣେ ମନଇଚ୍ଛା ବୁଲେ, ବଜାରରୁ ଏଣୁ ତେଣୁ କିଣି ଖାଏ । ଝିଅମାନେ ଯେତେ ଘରେ କାମ କରନ୍ତି, ଜାନକାମ୍ମା ଚାହେଁ ସେମାନେ ସେଠୁ ପ୍ରତିମାସରେ ଦରମାର ସବୁ ଟଙ୍କା ତାକୁ ଆଣି ଦିଅନ୍ତୁ, ତାହେଲେ ସେ ସମସ୍ତଙ୍କ ଅର୍ଜନ ଏକାଠି ଠୁଳ କରି ଘର ଚଳେଇବ— ଗଙ୍ଗାମ୍ମା ଶାନ୍ତ ସୁବୋଧ କୁହାର ବୋଲିର, ମା' ଯାହା କହେ ସେ ତା କରେ, ରାଜେଶ୍ୱରୀ ତ ପିଲା, ସେ ବି ମା'ର ଆଶ୍ରିତା, କିନ୍ତୁ ରଙ୍ଗାମ୍ମା ତା ରୋଜଗାରରୁ ତା'ର ବାଜେ ଖର୍ଚ୍ଚ ପାଇଁ ପାଞ୍ଚ ଦଶଟଙ୍କା କାଟି ରଖେ ।

ମଝିରେ ମଝିରେ ଲୁଗାପଟା ଓ ପ୍ରସାଧନ ଦ୍ରବ୍ୟ କଣିବାକୁ ଆତୁର କଛି ଟଙ୍କା ମାଠୁଁ ଝଡ଼େଇବାକୁ ଅଡ଼ି ବସେ । ଜାନକାମ୍ମା ବୁଝେ, ଏ ଝିଅଟି ତା'ର ଉପରମୁହାଁ, ଚଞ୍ଚଳମତି, ଅଳୁହାର, ଅବାଧ୍ୟ, କିନ୍ତୁ ତାକୁ ବାରମ୍ବାର କଅଁଳେଇ ଫୁସୁଲେଇ ତା କାନରେ ନାନା ହିତୋପଦେଶ ଶୁଣାଇବା ଛଡ଼ା ସେ ଅଧିକା କଛି କରିପାରେ ନାହିଁ । ବୁଝିପାରେ— ଯେପରି ଗଛ ବଢ଼ିଲେ ତାକୁ କୁଣ୍ଢ ପାଏ ନାହିଁ । ଓଃ ଏ ଝିଅ ତ ଆଜ ତା ଆଗ୍ରାରେ ନ ଚଳଲେ ତା'ର ନ ହେବ ଏପରି ନୁହେଁ, ସେ ନଜେ ତା'ର ପର ରୋଜଗାରିଆ ।

ସେହି ବଡ଼ ଝିଅଟି, ରଙ୍ଗାମ୍ମା, ତା ପାଇଁ ଗୋଟାଏ ସମସ୍ୟା ହୋଇଥିଲା । ବହୁ ବର୍ଷ ହେଲା ସେ ତାକୁ ବିଭା କରିଦେବାକୁ ପାତ୍ର ଖୋଜୁଛି, ପାଉ ନାହିଁ । ସୋମେସ୍ବା ରହୁଥିଲା ଆସାମରେ, ଭଉଣୀ ବାହା କରିପାରିଲା ନାହିଁ, ମରିଗଲା । ଜାନକାମ୍ମା ସ୍ବପ୍ନ ଦେଖୁଥିଲା ତା ଝିଅ ତା ଗାଁ ଆଡ଼େ କରୁଆ କୃଷୀ ଘରର ଘରଣୀ ହେବ, କିନ୍ତୁ ସେପରି ଘର ତା ନଜର ଆଉ ନୁହେଁ । ଶାଶୁଘର ଗାଁ ଲୋକଙ୍କୁ ଯେତେ କହିଲେ ସୁଦ୍ଧା କଏ କାହିଁକି ତା ପାଇଁ ମନଦେଇ ଖୋଜିବ ? ଏ ସମ୍ବନ୍ଧରେ ବହୁତ ଚିହ୍ନା ପରିଚିତ ଲୋକଙ୍କୁ ସେ ନାନା ପ୍ରକାରେ ବୁଝାଇ କହିଛି । କେତେ ନେହୁରା, କେତେ ଖୁସାମତ, ସମସ୍ତେ ତ ହଁ ହାଁ ମାରନ୍ତି । ସମୟ ଖର୍ଚ୍ଚ କରି ମନ ଦେଇ ଖୋଜନ୍ତି ନାହିଁ କେହି । ତଥାପି ସେ ଖୋଜା ଲଗାଇଥାଏ, ଆଶା ରଖିଥାଏ, ନଜେ ଯାଇ ବୁଝାଶୁଝା କରେ ।

ଗାଁର ସମାଜ ଏଠି ନାହିଁ । ସେ ଜାଣେ କେଡ଼େ ଭୟଙ୍କର ହୋଇଯାଏ ଏ ବସ୍ତି ସଞ୍ଜପରେ । ମଦ, ମାଇକିନିଆ, ଜୁଆ, ପ୍ରକାର ପ୍ରକାର ଉଚ୍ଛୃଙ୍ଖଳତା, ସେତେବେଳେ ନିରୀହ ଲୋକେ ଆପଣା ମହତ ଆପେ ରଖି କବାଟ କିଳନ୍ତି । ଦିନ ହେଉ ରାତି ହେଉ ଗୁରିଆଡ଼େ ଛପି ରହିଛନ୍ତି ପ୍ରକାର ପ୍ରକାର ସଇତାନ । ନବେଳା ପାଇଲେ ସୁବିଧା ଦେଖିଲେ ତାଙ୍କ ନଜ ରୂପ ଦେଖାନ୍ତି, ଓଟାରି ନଅନ୍ତି ଶିକାରକୁ । ତଥାପି ଏଠି ଏତେ ଲୋକ ରହନ୍ତି, ଚଳପ୍ରଚଳ ହୁଅନ୍ତି, ସେମାନେ ନଜ ନରିପତ୍ତି ଜଗି ଚଳନ୍ତି, ସେଇଆ ତ ବିଧି । କିନ୍ତୁ ଚୂଲି ଉପରେ ଦୁଧ ପରି ସେ ଉଚ୍ଛୁରି

ପଢ଼ିବ । ଆଲୁଅ ଗୃହିକଟରେ ପତଙ୍ଗ ପରି ସେ ଉଡ଼ି ଉଡ଼ି ଝାସ ଦେଉଥିବ —କ'ଣ ହେବ ତା ଅବସ୍ଥା ? ଗଙ୍ଗାମ୍ମାଟି—ଡବ ଡବ ଆଖି, ଶାନ୍ତ ମୁହଁ, କହେ କମ୍ କଥା, ଶୁଣୁଥାଏ, ବୁଝୁଥାଏ, ସେ କେତେ ସୁନ୍ଦର କଥା ମାନେ ! ସେ ଯୁଆଡ଼େ ଯାଉ ଜାନକାମ୍ମା ତା' ପାଇଁ ଝଡ଼ଧଡ଼କ, ସେ ଜାଣେ ଗଙ୍ଗାମ୍ମା ତା ବାଟେ ବାଟେ ଯିବ, ବାଁ ନାହିଁ ଡାହାଣ ନାହିଁ, ସିଧା, କାମ ସାରିବ, ସିଧା ଘରକୁ ଫେରି ଆସିବ, ଯୁଆଡ଼େ ଯିବାକୁ ପଠେଇଲେ ଯିବ ନ ହେଲେ ନାହିଁ । କିନ୍ତୁ ଗଙ୍ଗାମ୍ମାଠୁ ତାଠୁଁ ତିନ ବର୍ଷ ବଡ଼ ହୋଇ ସୁଦ୍ଧା ତାଠିଁ ସେ ବୁଦ୍ଧି ବିଚାରର ହୁସିଆରପଣ ନାହିଁ ଯେ ! କୁଆଡ଼େ କୁଆଡ଼େ ଯିବ ଜଣା ନାହିଁ, ସତ କହେ ନାହିଁ, ମନରୁ ଫାନ୍ଦ ଏଣୁ ତେଣୁ କହିଦିଏ ।

ଜାନକାମ୍ମା ମଝିରେ ମଝିରେ କେଉଁ କେଉଁ ସାହି ମାଈପିଙ୍କଠୁଁ ଶୁଣିଥାଏ "ତୋର ବଡ଼ ଝିଅକୁ କଟକଣା କର୍ ମା, ପାନଦୋକାନରେ ଚା' ଦୋକାନରେ କୁଆଡ଼ର କୁଆଡ଼ର ଟୋକାଙ୍କ ସାଙ୍ଗେ ହିଁ ହିଁ ଫିଁ ଫିଁ ହଉଚି······ଅମୁକ ଟୋକା ସଙ୍ଗରେ ସିନେମା ପଳେଇଥିଲା······ ଇତ୍ୟାଦି ଇତ୍ୟାଦି । ଝିଅକୁ ଗାଳି ଦେଲେ ଝିଅ ବି ତାକୁ ଗାଳିଦିଏ, ସବୁ ଫାଙ୍କି ଦିଏ ।

ଅନ୍ଧ ଅଥବା ଯୋଗୁଁ ରାଗରେ ରଡ଼ି ଛାଡ଼େ—ମ କୁ, ଝିଅକୁ, ସାହିପଡ଼ିଶାଙ୍କୁ, ଅଜଣା ଶତ୍ରୁଙ୍କୁ ଗାଳିଦିଏ, କାନ୍ଦେ, ସ୍ଥିର ହୁଏ ।

ଗଙ୍ଗାମ୍ମା ପ୍ରକୃତରେ ମା'ର କଟକଣା ମାନୁ ନ ଥିଲା, ସେ ଆପଣା ପ୍ରବୃତ୍ତିକୁ ମାନୁଥିଲା, ଏପଟ ସେପଟ ଚହଲି ଯାଉଥିଲା, ଯେତେବେଳେ ଅଟକୁଥିଲା ସେତେବେଳେ କେବଳ ଭୟରେ । ଯାହାର ତା ପାଇଁ ତିଳେ ବି ମମତା ନାହିଁ, ଯେ ତା ଦାୟିତ୍ୱ ନେବ ନାହିଁ, ଯାହା ପାଇଁ ସେ ଖାଲି ରାସ୍ତାକର ଦୋକାନର କପେ ଚା', କି ପଇସା ମାଡ଼ିଲେ ବାଟ କରିବ ଗୋଟାଏ ନଗେଲା ସ୍ଥାନ ସେହିଭଳି ଲୋକଙ୍କର ସେ ଅଇଣ୍ଠା ହେଲା, କିଏ କେଉଁ ଛଳରେ କି ତା ସାହିର କେଉଁ ଛତରା, ଅଥବା କେଉଁ କୋଠା-ଘରର, କିନ୍ତୁ ସେତେବେଳର ଯେଉଁ କେତେ ମିନିଟ୍ ତାକୁ ଅଦ୍ଭୁତ ସୁଖରେ ପୁଲକିତ କଲା ଯେପରିକି ତା ଉପରେ ସ୍ୱର୍ଗ ଦ'ଆଇଁଲା । ସେ

ଦେହସୁଖ ପାଇବା ସଙ୍ଗେ ସଙ୍ଗେ କିଛି କିଛି ଶସ୍ତା ଉପହାର ବି ପାଇଲି । ଘରେ ପଢ଼ି ବୁଝାଇ କହିବାକୁ ଧନ୍ଦି ହେବାକୁ ପଡ଼େ ନାହିଁ—"ଅମୁକ ଘର ବାବୁ ଦେଲ·····ଅମୁକ ଘର ମା ଦେଲ·····" ଇତ୍ୟାଦି । ସେ ଯେ ଗର୍ଭବତୀ ହେଲି ନାହିଁ ସେଥିପାଇଁ ଦୈବ ହିଁ ଦାୟୀ । ତା ମୁହଁର ସରଳତା, ନମ୍ରତା ଓ ସହଜ ଲାବଣ୍ୟ ଉଭେଇ ଯାଇ ଫୁଟି ଉଠିଲି ଗୋଟିଏ ଚତୁର, ସନ୍ଦେହୀ, କର୍କଶତା, କିନ୍ତୁ ସେତିକରେ ସରିଲି ନାହିଁ । ଆରମ୍ଭ ହେଲି ତାଠିଁ ଗନୋରିଆ (ମେହ) ରୋଗର ନାନା ଉପସର୍ଗ । କ'ଣ ହେଲି ବୋଲି ତାଠିଁ ଚିନ୍ତା ପଶିଗଲି । ସେତେବେଳେ କାନ୍ଦି ବୋବେଇ ସେ ମା' କୋଡ଼ରେ ମୁଣ୍ଡଗୁଞ୍ଜି ତାକୁ ଜାବୁଡ଼ି ଧରିଲି ।

ଜାନକାମ୍ମା ପୁଣି ତା ଭାଗ୍ୟକୁ ଆବୋରି ଚିନ୍ତାକୁ ପଥର କଲି । ଝିଅକୁ ଯେମିତି ଡାକ୍ତର ଦେଖାଇ ଚିକିତ୍ସା ବନ୍ଦୋବସ୍ତ କଲି । ଯୋଗୁଲୁ ଜାଣିପାରିଲି ନାହିଁ ।

ଔଷଧ ଖାଇ ଖାଇ ଇଞ୍ଜେକସନ୍ କେତୋଟି ନେଇ ରାଙ୍ଗାମ୍ମାର ରୋଗ ଦବି ଗଲି । ଡାକ୍ତର କହିଲେ ଓ ସେମାନେ ବିଶ୍ୱାସ କଲେ ଯେ ସେ ଭଲ ହୋଇଗଲି—ତା'ର ଓଲେଇ-ଗାଣ୍ଡି ପ୍ରକୃତି ପୂର୍ବ ବଦଳି ଗଲି ସେପରି ନୁହେଁ, କିନ୍ତୁ ଭୟ ତା'ର ମନରେ ପଶିଥାଏ । ସେ ଚାଲିଯାଏ ପଡ଼ିଯାଏ ନାହିଁ, ବୁଝେ ସେ କେଉଁଠି ଅଟକିବ, ଚିଟିପିଟି ହୋଇ ଚଳାଇ ଯାଏ ।

ବଡ଼ ଝିଅର ବାହାଘର ପାଇଁ ଜାନକାମ୍ମା ପାତ୍ର ଖୋଜାଇବା ଲଗାଇଥାଏ । ଭାଗ୍ୟକୁ ତା ନିଜ ଅଞ୍ଚଳରେ ଟୋକାଟିଏ ମିଳିଗଲି, ଗାଁରେ ଜମି କିଛି ଅଛି, ନିଜେ ମୂଲ ଲାଗେ, ତା'ର ହାତ ଘଣ୍ଟାଟିଏ ଓ ସାଇକଲ ଖଣ୍ଡେ ଦରକାର, ଜାନକାମ୍ମାକୁ ସେତିକି ବି ବହୁତ, କିନ୍ତୁ ସେହିସବୁ ଖର୍ଚ୍ଚ ପାଇଁ ତ ପେଟରୁ କାଟି କାଟି ସେ କିଛି କିଛି ସଞ୍ଚୟ କରିଛି, ସେ ରାଜି ହୋଇଗଲି । ଯାହାହେଉ, ଝିଅଟି ତାର ସୁଖରେ ରହିବ,—ତା ଆପଣା ଅଞ୍ଚଳର ଭଦ୍ର ସମାଜର ଚାଷୀ ଘରର ପିଲା, ସେ ସମାଜରେ ଆଉ ଦଶଜଣ ଯେପରି ଚଳନ୍ତି ତା' ଝିଅ ଜୋଇଁ ସେପରି ଚଳିବେ । ରାଙ୍ଗାମ୍ମା ଶାଶୁଘର ଗଲି ।

ସତେ ଯେପରି ଦୁଇ ଝିଅଙ୍କର ଏକାଠି ବାହାଘର ଫିଟିଥିଲା ।
—ଗଙ୍ଗାମ୍ମା ବଡ଼ ହେବାର ଦୁଇ ମାସ ପରେ ଗଙ୍ଗାମ୍ମା ପାଇଁ ବଡ଼ ସମ୍ବନ୍ଧ ଆସି ପହଞ୍ଚିଲା । ଏ ସହରର ଏ ବସ୍ତିରେ ରହୁଥିବା ଆନ୍ଧ୍ର ଦେଶରୁ ଆସିଥିବା ଆଉ ଜଣେ ଲୋକ, ଯେ ଜାନକାମ୍ମା ଓ ତା' ପରିବାରର ପରିଚିତ, ଗାଙ୍ଗାମ୍ମାର ଗୁଣଗ୍ରାମ ବର୍ଣ୍ଣନା କରି ସେ ହିଁ ମତାଇଥିଲା ବରକୁ ଓ ତା ବାପମାଙ୍କୁ—"ସାକ୍ଷାତ୍ ଲକ୍ଷ୍ମୀଟିଏ । କନ୍ୟା-ରତ୍ନ । ଆରେ, କନ୍ୟା ତ ଯେଉଁଠି ସେଇଠି ଖୋଜିଲେ ମିଳିବେ । ଲୋଡ଼ିଲେ ସୁନା ବି ମିଳିବ । ସୁନା ସବୁଦିନେ ରହେ କି ? ନା ସୁଖଶାନ୍ତିକୁ ସୁନାରେ କିଣି ହୁଏ ? ଏମିତି ସବୁ ଗୁଣରେ ପୂର୍ଣ୍ଣ କନ୍ୟା ଆଉ କୋଉଠୁ ପାଇବ ନାହିଁ ।" ସେମାନେ ରେଲ୍ ଚଢ଼ି କନ୍ୟା ଦେଖି ଆସିଲେ । ଦେଖି ମନକୁ ପାଇଲା, ରାଜି ହେଲେ । ମା' ଭଉଣୀଙ୍କ ସଙ୍ଗେ ଗାଁକୁ ବାହାରିଲା ବେଳକୁ ଗାଙ୍ଗାମ୍ମା କାନ୍ଦି କାନ୍ଦି ଯୋଗୁଲୁଠୁଁ ବିଦା ହେଲା, ସେମାନଙ୍କ ଅନୁପସ୍ଥିତି ବେଳେ ଯୋଗୁଲୁର ଯତ୍ନ ନେବାକୁ ଗୋଟିଏ ପଡ଼ୋଶୀ ପରିବାର ଦାୟିତ୍ୱ ନେଲେ, ସେମାନେ ସମସ୍ତେ ଗରିବ ଖଟିଖିଆ, ପରସ୍ପରଙ୍କ ବିପଦ କି ପ୍ରୟୋଜନ ବେଳେ ନିଜକୁ ନ ବାଧିଲା ଭଳି ପରସ୍ପରଙ୍କୁ ସାହାଯ୍ୟ କରିଥାନ୍ତି । ଗାଁରେ ଗଙ୍ଗାମ୍ମାର ବାହାଘର ସୁରୁଖୁରୁରେ ହୋଇଗଲା, ବର ଘରର କିଛି ଦାବି ନ ଥିଲା, କନ୍ୟାଘରୁ ଯାହା ମିଳିଲା ତହିଁରେ ତାଙ୍କର ସନ୍ତୋଷ । ବରଟି ସୁଶ୍ରୀ, ସ୍ୱାସ୍ଥ୍ୟବାନ୍, ସାମାନ୍ୟ କିଛି ପଢ଼ିଛି, ତାର ଭାଇ ଭଉଣୀ ବାପ ମା' ଅଛନ୍ତି, ସମସ୍ତେ ବର୍ଷକ ଖାଇବା ପାଇଁ ଜମିବାଡ଼ି ଅଛି, ସମସ୍ତେ କୃଷି-କାର୍ଯ୍ୟ କରନ୍ତି । ତଥାପି ଜାନକାମ୍ମାର ସଞ୍ଚୟରୁ ବହୁ ଅର୍ଥ ଖର୍ଚ୍ଚ ହୋଇଗଲା ।

ଗଙ୍ଗାମ୍ମା ସୁଖରେ ରହିଲା, ଶାଶୁ ଘରେ ତା'ର ବହୁତ ପ୍ରଶଂସା । ପାଞ୍ଚ ମାସ ପରେ ବାପମା'ଙ୍କୁ ଦେଖିବ ବୋଲି ସେ ତା ସ୍ୱାମୀ ସହିତ ଯେତେବେଳେ ଏ ସହରକୁ ଆସିଲା, ଦିହେଁ ସେହି କୁଡ଼ିଆ ଘରେ ରହିଲେ ସେତେବେଳେ ଆନନ୍ଦରେ ତା' ବର ସମାପ୍ତ ସେ ପରିବାର ସହିତ ଖାପିଗଲା, ଯେତେଦିନ ରହିବ କିଛି କାମଦାମ କରି ରୋଜଗାର କରିବ ଓ ଏମାନଙ୍କୁ ସାହାଯ୍ୟ କରିବ ବୋଲି ମନକଲା ଓ ମାଟି ଖୋଳୁଥିବା କୁଲି ଦଳରେ ଯୋଗ ଦେଲା ଓ ଗଙ୍ଗାମ୍ମା ତା ମା'କୁ ସାହାଯ୍ୟ କରିବ ବୋଲି

ମା ସଙ୍ଗେ ମିଶି ବଡ଼ଲୋକ ଘରକୁ କାମ କରିବାକୁ ଗଲା । ଜାନକାମ୍ମା ସମସ୍ତଙ୍କ ଆଗରେ ତା' ସୁଖ ସୌଭାଗ୍ୟ କଥା ହସି ହସି ଗପି ଲାଗିଥାଏ, ଗପିବା ବି ପ୍ରୟୋଜନ ନ ଥାଏ କାରଣ ସମସ୍ତେ ଦେଖିପାରୁଥିଲେ ଯେ ଗଙ୍ଗାମ୍ମାର ମୁହଁରେ ଚେହେରାରେ ପୂର୍ବ ତୁଳନାରେ ନାନା ପରିବର୍ତ୍ତନ ଘଟିଛି, ସେଠି ସୁଖସନ୍ତୋଷ ଆନନ୍ଦର ଦୀପ୍ତି ଫୁଟୁଛି, ସେ ଆହୁରି ମଧୁର, ସୁଶ୍ରୀ ଓ ଶାନ୍ତ ଦିଶୁଛି, ତା ଉହାଡ଼ରେ ବାରି ହେଉଛି ଏକପ୍ରକାର ମର୍ଯ୍ୟାଦାବନ୍ତ ମୌନ ଗାମ୍ଭୀର୍ଯ୍ୟ । ପନ୍ଦରଦିନ ରହି ସେ ଓ ତା ସ୍ୱାମୀ ଫେରିଗଲେ ।

ତା'ପରେ ଦିନେ ଲେଉଟି ଆସିଲା ଗଙ୍ଗାମ୍ମା, ତାଙ୍କ ଘରେ କାନ୍ଦବୋବାଳି ପଡ଼ିଗଲା, ଗଙ୍ଗାମ୍ମା କହିଲା ତା ସ୍ୱାମୀ ତାକୁ ହତାଦର କରେ, ପିଟେ, ଶାଶୁ ଶଶୁର ଦୂର୍ ଦୁର୍ କରନ୍ତି, ଶେଷରେ ସେମାନେ ସମସ୍ତେ ତାକୁ ମାଡ଼ ମାରି ଘରୁ ତଡ଼ିଦେଲେ, କହିଛନ୍ତି ଆଉ ଯେପରି ସେ ସେଠି ମୁହଁ ନ ଦେଖାଏ । ସେମାନେ ତାଠିଁ କି ଦୋଷ ଦେଖିଲେ, କାହିଁକି ତାକୁ ତଡ଼ିଲେ ଜାନକାମ୍ମା କିଛି ଜାଣିପାରିଲା ନାହିଁ । ରେଳ ଟିକଟ କରି ନିଜେ ଧାଇଁଲା, ଶାଶୁଘର ଗାଁକୁ ଯାଇ ଲୋକବାକ ନେଇ ସମୁଦି ଗାଁକୁ ଯାଇ ଗଙ୍ଗାମ୍ମାର ଶାଶୁଘରେ ପହଞ୍ଚି ପହଞ୍ଚୁ ସେମାନେ ଗୋଠ ହୋଇ ତା'ର ମୁହାଁମୁହିଁ ହେଲେ, ତା ଝିଅର ଚରିତ୍ର ବିରୁଦ୍ଧରେ ନାନା ଦୋଷ ଗାଇ ସେପରି ଝିଅର ମା ହୋଇଛି ବୋଲି ତାକୁ ଧିକ୍‌କାର କଲେ ଓ ଜଣାଇଦେଲେ ଯେ ତା'ର ଆଉ ମୁହଁ ଚାହିଁବେ ନାହିଁ, ତାଙ୍କ ପୁଅକୁ ଅନ୍ୟତ୍ର ବିଭାଦେବେ । ଜାନକାମ୍ମା କଳିଗୋଳ କଲା, କାନ୍ଦି କାନ୍ଦି ଫେରି ଆସିଲା । ତା ଗାଁରୁ କେହି କେହି ପରାମର୍ଶ ଦେଲେ, ଜୋଇଁ ଓ ତା ବାପ ମାଙ୍କ ନାଁରେ ମକଦ୍ଦମା କରିବାକୁ ପଡ଼ିବ । ଜାନକାମ୍ମା ଶୁଣିଲା ନାହିଁ, କହିଲା ମକଦ୍ଦମାରେ ପଶି ତ ଜମିବାଡ଼ି ସବୁ ଗଲା ଆମେ ଭିକାରି ହେଲୁଁ, ଆଉ ପୁଣି କଚିରି ? ସ୍ୱାମୀ ଶାଶୁ ଶଶୁର ତ ଆଦରିବେ ନାହିଁ, ବଳେଇ ପଶିଲେ ଝିଅ ଜୀବନରୁ ମରିବ, ମକଦ୍ଦମା କରି କ'ଣ ମିଳିବ ?

ପୁଣି କର୍ମସ୍ଥଳକୁ ଫେରିଆସି ଝିଅକୁ ବି ସେ ଗାଳିଦେଲା, ତା ଶାଶୁଘରକୁ ତ ସହଜେ, ନିଜ ଭାଗ୍ୟକୁ ଗାଳିଦେଇ କାନ୍ଦିକାଟି ପୁଣି ନିଜକୁ ଆୟତ୍ତ କରି ପୂର୍ବ ପରି କାର୍ଯ୍ୟରେ ଲାଗିଗଲା, ଗଙ୍ଗାମ୍ମା ବି କାମକୁ

ବାହାରିଲା, ଗୋଟିଏ ଯୋଡ଼ିଏ ଘର ଧରୁ ଧରୁ ସୁରେଶଙ୍କ ଘରେ କାମ ପାଇଗଲା । ଦିନକେ ଦୁଇଥର ଯାଇ ବାସନମଜା, ଘରଓଳିଆ, ଲୁଗାଧୂଆ ଆଦି କାମ କରିଦେଲେ ଘରଘରକେ ମାସକୁ ଦରମା ଆଉ ଆଗ ପରି ଦଶ ପନ୍ଦର ଟଙ୍କା ନୁହେଁ, ହେଲାଣି କୋଡ଼ିଏ ତିରିଶି । କିନ୍ତୁ ଜାନକାମ୍ମା ଝିଅଟି ପାଇଁ ସେତିକି ଭବିଷ୍ୟତ ଭାବୁ ନ ଥାଏ, ତା ପାଇଁ ବର ଖୋଜୁଥାଏ, ଗଙ୍ଗାମ୍ମା ତା ବର, ବରର ଭାଇଭଉଣୀ ବାପ ମାଙ୍କ ବିରୁଦ୍ଧରେ ମନରୁ ଫାନ୍ଦି ନାନା କାହାଣୀ ତା ମା ବାପାଙ୍କ ଆଗରେ ଗପି ଗପି ସଫେଇ ଦେଇଥିଲା । ସେ ଆଲୋଚନା ବି ପୁରୁଣା ହୋଇଥିଲା ଓ କ୍ରମେ ବନ୍ଦ ହୋଇଥିଲା । ପ୍ରକୃତରେ ସେ ବହୁତ ସୁଖର ସ୍ୱପ୍ନ ଦେଖି ଦେଖି ଶାଶୁଘରକୁ ଯାଇଥିଲା, ବାହା ହେଲା ବୋଲି ମର୍ଯ୍ୟାଦା ଓ ଗର୍ବ ଅନୁଭବ କରିଥିଲା, କିନ୍ତୁ ମୂଳରୁ ସେଠି ସେ ଖାପି ପାରିଲା ନାହିଁ । ସେମାନଙ୍କ ନୀତି-ନିୟମ ନିୟନ୍ତ୍ରଣ ଭିତରେ ତାକୁ ଅସ୍ୱାଭାବିକ ଲାଗିଲା । ସେମାନଙ୍କ କଟକଣା ତାକୁ ବିଷ ପରି ଲାଗିଲା, ତା'ର ଅବାଧତା, କଳହପ୍ରିୟ ପଣ, ତା ଚଳଣି ସବୁ ସେମାନଙ୍କୁ ଉତ୍‌କ୍ଷିପ୍ତ କଲା । କିନ୍ତୁ ଏତେ ଅଶାନ୍ତ କୋଳାହଳ ଭିତରେ ଥାଇ ସୁଦ୍ଧା ଗଙ୍ଗାମ୍ମା ତା'ର ପୂର୍ବର ବାରବୁଲା ଚଖା ଖୋଇ ଛାଡ଼ି ପାରିଲା ନାହିଁ, ସୁବିଧା ପାଇଲେ କେଉଁ ଛକରେ ଯାଇ ଲୁଚିଛପି ସେ ଗାଁର କେଉଁ କେଉଁ ଟୋକାଙ୍କ ସଙ୍ଗେ ହସାହସି ଖେଳବସର ହୁଏ, ତା'ର ଶାଶୁଘର ଆଖି ବାରିହୁଏ କିଏ ଓ' କରିବ । ନୂଆ ଆସିଥିବା ବୋହୂ ବିଷୟରେ ନାନା ସନ୍ଦେହ ଫୁସୁରୁ ଫାସୁରୁ ହେଉ ହେଉ ଶାଶୁଘର ଲୋକଙ୍କ କାନକୁ ଗଲା, ସେମାନେ ଛନକ ରହିଲେ, ତା'ପରେ ଦିନେ ତାଙ୍କେ ଛେଚ ଘରୁ ତଡ଼ିଦେଲେ ।

ଫେରି ଆସିବାର ହତାଶା ଓ ଅପମାନ ଗଙ୍ଗାମ୍ମାକୁ ବାଧିଥିଲା । ଅଥଚ ସେ ନିଜର ତ୍ରୁଟି ଲାଗି ଗ୍ଲାନି ଅନୁଭବ କଲା ନାହିଁ, ଟିକିଏ ବି ଅନୁତାପ କଲା ନାହିଁ । କ'ଣ ସେ ଅଧିକା ଟା କଲା ଯେ ଏଡ଼େ ଦଣ୍ଡ ! ସେ ଭାବୁଥାଏ, କେଉଁ ଅମାୟିକ ଯୁବକ ସହିତ ସାମାନ୍ୟ ଆଳାପ କି ହସାହସି କଲେ କ'ଣ ଏତେ ଦୋଷ ? ସେ ନିଜେ କ'ଣ ମଣିଷ ନୁହେଁ, ଖୁଣ୍ଟରେ ବନ୍ଧା ଗୋରୁ ? ଶାଶୁଘରେ କିଏ ତାକୁ ଶରଧା କଲା, ତା ସୁଖ

ଦୁଃଖ ବୁଝିବ ? ସେ ଓଲଟି ଫାଢ ଫାଢ ଆକ୍ଷେପ କରି ଏହିପରି ଭାବୁଥାଏ ଓ ନିଜ ଆଗରେ ନିଜେ ଠିକ୍ ବୋଲି ନିଜକୁ ଦମ୍ଭ ଦେଉଥାଏ । କ୍ରମେ ଭାବିଲା, ସେ ଗୋଟାଏ ରାକ୍ଷସପୁରୀରେ ବନ୍ଦିନୀ ହୋଇଥିଲା, ଭାଗ୍ୟ ଭଲ ସେଠୁ ଖସି ଆସିଛି । ଯେଉଁ ଯୁବକଟିକୁ ବିଭା ହୋଇଥିଲା ତା ପ୍ରତି ତା’ର ସ୍ନେହ ମମତା ଆସି ନ ଥିଲା ଏପରି ନୁହେଁ, କିନ୍ତୁ ସେ ନିଜର ବିଶ୍ୱାସ ଜନ୍ମେଇଲା, ସେ ଲୋକର ମନଟା ଦୁର୍ବଳ, ସେଇଟା ଦୁର୍ବଳ ଅମଣିଷ, ବାପମା’ଙ୍କୁ ଭାଇଭଉଣୀଙ୍କୁ ଡରି ମରେ, ସ୍ତ୍ରୀ କଥା ମୋଟେ ଶୁଣେ ନାହିଁ, ସେହିମାନଙ୍କ କଥାରେ ବସ ଉଠୁ ହୁଏ । ସେ ତ ତାକୁ କେତେ ଥର କହିଛି, ଏ ଗନ୍ଧିଆ ମଫସଲିଆ ଜୀବନ ଭିତରେ ବନ୍ଦୀ ପଡ଼ିବା ନାହିଁ, ଚାଲି ଆମେ ସେହି ସହରକୁ ପଳେଇବା ଯେଉଁଠି ମୋ ବାପା ମା’ ଅଛନ୍ତି । କେତେ କାମ ମିଳିବ, କେତେ କେତେ ଟଙ୍କା ରୋଜଗାର, କେତେ ମଉଜ ପୂର୍ତ୍ତି କରିବ, ଦିହେଁ ରୋଜଗାର କରିବା ସ୍ୱାଧୀନ ଭାବେ ଚଳିବା, ସେ ଡରୁଆଟା ତା ପାଟିରେ ହାତ ମାଡ଼େ, ସ୍ୱାମୀ ହୋଇ ତାକୁ ଜୁହାର କରେ, କହେ କହନା ସେ କଥା । ରଙ୍ଗାମ୍ମା ତା ନାଁରେ ବି ବାପ ଘରେ ପ୍ରଚାର କରିଥିଲା, ସେଇଟା ମଦୁଆଟା, ବାର ମାଇକିନିଆଙ୍କ ପଛେ ଗୋଡ଼ାଏ, ମତେ ଗାଳିଦିଏ, ମାରେ । କେହି କେହି ଚିହ୍ନା ଘରେ ତା ଝିଅ ଶାଶୁଘରୁ ଚାଲିଆସିବା କଥା କହିଲେ ଜାନକାମ୍ମା କପାଳରେ ହାତ ପିଟି କହେ "ସବୁ ମୋ କପାଳ ଦୋଷ, ଜାଣି ନ ଥିଲି ସେଗୁଡ଼ାକ ଏଡ଼େ ଖରାପ ଲୋକ ।"

ସହରରେ ଜାନକାମ୍ମାର ବନ୍ଧୁମାନେ ଲାଗି ପଡ଼ିଲେ କେମିତି ତା ବଡ଼ ଝିଅ ପାଇଁ ବରଟିଏ ଖୋଜି ଦେବେ । ଜାନକାମ୍ମା ସେମାନଙ୍କୁ କହୁଥାଏ, ସବୁଆଡ଼ୁ ଭଲ ହୁଅନ୍ତା ଯଦି କେହି ଘରଜୋଇଁଆ ରହିବାକୁ ମିଳନ୍ତା, ଜୋଇଁଟି ତା ଆଖି ଆଗରେ ରହନ୍ତା, ତାର ଓ ତା ସ୍ୱାମୀର ଆଶ୍ରୟ ବି ହୁଅନ୍ତା, ତା’ର ଦୁଃଖ ଯାଆନ୍ତା । ରିକ୍‌ସାବାଲା ନାର୍ସାୟ୍ୟା ଜାନକାମ୍ମାର ଗୋଟିଏ ପଡ଼ୋଶୀ, ଦିନେ ତା’ର ଗୋଟିଏ ନୂଆ ହୋଇ ଆସିଥିବା ତେଲୁଗୁ ଶ୍ରମିକ ଯୁବକ ସହିତ ଚିହ୍ନାହେଲା । ସେ ତାକୁ ପଚାରି ବୁଝିଲା ଯେ ପିଲାଟି ଜାନକାମ୍ମା ଜାତିର, ତା ନାଁ ଜାର୍‌ଗେୟା, ତା’ର ବାପ ମା’ ନାହାନ୍ତି । ଭାଇମାନେ ପଚାରନ୍ତି ନାହିଁ, ଗାଁରେ ଜମିବାଡ଼

ନାହିଁ । ଏଠି କାମ ମିଳେ ଶୁଣି ସେ ଏ ସହରକୁ ପଳେଇ ଆସିଛୁ ମୂଲ ଲଗିବ, ରୋଜଗାର କରିବ, ଚଳିବ, ଜଣକର ପିଣ୍ଡାରେ ରହୁଛୁ । ଯୁବକଟିର ଚେହେରା ଦେଖି କଥାଭାଷା ଶୁଣି ନାର୍ସେୟ୍ୟାର ତା ପ୍ରତି ବିଶ୍ବାସ ଆସିଲା, ସେ ଯାଇ ଜାନକାମ୍ମାକୁ କହିଲା । ଜାନକାମ୍ମା ବି ତା ସଙ୍ଗେ କଥାଭାଷା କରି ଖୁସି ହେଲା, ପରାମର୍ଶ ଦେଲା ଯେ ଯୁବକଟି ଆଉ କାହା ପିଣ୍ଡାରେ ନ ରହି ତା'ର ବସ୍ତିରେ ତା ପିଣ୍ଡାରେ ବସା କରୁ, ଏକା ରୋଷେଇରେ ସମସ୍ତେ ଖାଇବେ, ସେ ତା ରୋଜଗାରରୁ ତା ଖାଇବା ଖର୍ଚ୍ଚ ଦେଉଥିବ ।

'ଜାଗ୍‌ଗେୟ୍ୟା ଆଗ୍ରହରେ ରାଜି ହେଲା । ଜାନକାମ୍ମା ଘର ପିଣ୍ଡାରେ ଶୁଏ, ତା' ଘରେ ଖାଏ, କେଉଁଠି ମୂଲ ଲଗିବାକୁ ଯାଇ ଲେଉଟି ଆସି ସେଇଠି ରହେ । ତା' ପାଇଁ ଜାନକାମ୍ମା ଓ ତା ବନ୍ଧୁମାନେ ମୂଲ ଲଗିବାକୁ କାମ ଧନ୍ଦା ଖୋଜି ତାକୁ ଖବର ଦିଅନ୍ତି, ତା ହାତ ପ୍ରାୟ ଖାଲି ରହେ ନାହିଁ । ଜାନକାମ୍ମା ଘରେ ସମସ୍ତେ ତା ବ୍ୟବହାରରେ ଖୁସି, ସ୍ବାସ୍ଥ୍ୟବାନ୍ କାମିକା ଲୋକଟିଏ, ଉପରେ ପଡ଼ି ସାହାଯ୍ୟ କରେ, ବ୍ୟବହାର ବିନୀତ, ସଙ୍କୁଚିତ, କାହା ମୁହଁକୁ ନ ଅନାଇଁ ତଳକୁ ଅନାଇଁ କଥା କହେ, କଥାରେ ଶାନ୍ତ, ସଙ୍କୁଚିତ, ମଧୁର । ସେ ଥିଲାବେଳେ ଯୋଗୁଲୁ ଡାକଲାମାନେ ତା'ର କାମ କରେ, ଯୋଗୁଲୁ ଯାହା ଗପେ ସେ ହଁ ହଁ କରି ଉତ୍ସାହ ଦେଇ ଦେଇ କଥା ଶୁଣେ, ରାଜେଶ୍ବରୀକୁ ବି ସମ୍ମାନ କରେ, ରାଙ୍ଗାମ୍ମା ତାକୁ ଯେତେ କେଞ୍ଚି କେଞ୍ଚି ଉତ୍ତେଜିଲେ ବି ସେ ଖୁବ୍ ଭଦ୍ର ସଙ୍କୁଚିତ ଭାବରେ ଉତ୍ତର ଦିଏ ବା ମୌନ ରହେ, କେବେ ତା ସଙ୍ଗେ ହେଁ ହେଁ ଫେଁ ଫେଁ ହୁଏ ନାହିଁ । ସେ ତା ନିଜର ଯେଉଁ ପରିଚୟ ଦେଇଥିଲା ତାହା କେତେ-ଦୂର ସତ ସେ ବିଷୟରେ ଅନୁସନ୍ଧାନ କରିବାକୁ ଜାନକାମ୍ମା ତା'ର କେଉଁ କେଉଁ ବନ୍ଧୁବାନ୍ଧବଙ୍କୁ ଚିଠି ଲେଖିଲା, ସେମାନେ ଆଉ କାହାକୁ କାହାକୁ ଲେଖିଲେ, ଶେଷରେ ଉତ୍ତର ମିଳିଲା ଯେ ଜାଗ୍‌ଗେୟ୍ୟା ତା ଗାଁ, ବାପମା', କୁଳଶୀଳ, ଅବସ୍ଥା ଆଦି ବିଷୟରେ ଯାହା ଯାହା କହିଛି କିଛି ମିଛ ନୁହେଁ, ତା'ର ସାମାନ୍ୟ ପୈତୃକ ଜମି କିଛି ଥିଲା, ତା ଭାଇମାନେ ସେତକ ମାଡ଼ି ବସିଛନ୍ତି ।

ଇତ୍ୟବସରେ ରଙ୍ଗାମ୍ମାର ସ୍ୱାମୀ ଅତ୍ୟନ୍ତ ବଢ଼ି ହୋଇ ସାରିଥାଏ । ହନେ ଜାନକାମ୍ମା ଜାଗ୍‌ଗେୟ୍ୟାକୁ ପ୍ରସ୍ତାବ ଦେଲା ସେ ତା ଝିଅ ରଙ୍ଗାମ୍ମାକୁ ବାହା ହେଉ, ଘରଜୋଇଁଆ ହୋଇ ତା ଘରେ ରହୁ, କାଳକ୍ରମେ ସେମାନେ ସଜେଶ୍ୱରଟିକୁ ବଢ଼ କରିଦେବେ, ତାହା ଘରେ ଯୋଗୁଲୁର ଓ ତା'ର ଯାହାକିଛି ସମ୍ପତ୍ତି କ ସମ୍ପତ୍ତି ସବୁସେ ଜାଗ୍‌ଗେୟ୍ୟା ଓ ରଙ୍ଗାମ୍ମାଙ୍କୁ ଦେଇ ଦେବ, ତାଙ୍କର ଆଶ୍ରାରେ ରହି ବୁଢ଼ା ଓ ସେ ଆଖି ବୁଜିବେ । ଜାଗ୍‌ଗେୟ୍ୟା ରାଜି ହୋଇଗଲା ।

ଆଉ ଗାଁକୁ ନ ଯାଇ ସେହି ସହରରେ ହିଁ ଅତି ସରଳ ଓ ସଂକ୍ଷିପ୍ତ ଭାବେ ଜାଗ୍‌ଗେୟ୍ୟା ଓ ରଙ୍ଗାମ୍ମାଙ୍କ ବିବାହ ହୋଇଗଲା, ବାପମା'ଙ୍କ କୁଡ଼ିଆକୁ ଲାଗି ସେମାନଙ୍କ ପାଇଁ ଆଉ ଗୋଟିଏ ଟିକି ବଖରା ତିଆରି କରାଗଲା ।

ଲାଗୁଥାଏ, ରଙ୍ଗାମ୍ମାର ଯେପରିକି ଜାଗ୍‌ଗେୟ୍ୟା ସଙ୍ଗେ ଭଲ ପଡ଼ୁଛି । ଜାଗ୍‌ଗେୟ୍ୟା ତାକୁ କୌଣସି ପ୍ରକାରେ ବାଧା ଦିଏନାହିଁ, ସେ ଯୁଆଡ଼େ ଯାଉ । କେବେ ଟାଣକରି ବି ପଦେ କହେ ନାହିଁ, ସେ ତା'ର ସ୍ୱାମୀ ହେଲାପରେ ବି ଆଗପରି ବାଧ୍ୟ, ଅନୁଗତ । ରଙ୍ଗାମ୍ମା ଧରିନେଲା ତା ସ୍ୱାମୀଟି ନିତାନ୍ତ ପୋଷା ଓ ଭଲ ମଣିଷ, ଉଁ ନାହିଁ ଚୁଁ ନାହିଁ । ପଦାରେ ଅନ୍ୟ ପୁରୁଷଙ୍କ ପ୍ରତି ତା'ର କେତେବେଳେ ଦୁର୍ବଳତା ଆସିଗଲେ ସେ ଖାଲି ରୋଗ ଡେଇଁବା ଡର କଥା ମନେ ପକାଇ ଯାହା ଶଙ୍କି ଯାଉଥିଲା, ନ ହେଲେ ତାକୁ ଆଗଠୁଁ ଆହୁରି ସ୍ୱାଧୀନ ଲାଗୁଥିଲା, କାରଣ ସେ ସ୍ୱାମୀ ସଙ୍ଗେ ଅଛି, ଯଦି ଗର୍ଭବତୀ ହୁଏ ସେ ତ ଆନନ୍ଦର କଥା ହେବ, ତା ଶରିଧା ଝିଅମାନେ ସନ୍ତାନବତୀ ହେଲେଣି, ତା'ର ବି ମନ ହେଲାଣି ସେ ମା ହୁଅନ୍ତା କି !

ଜାଗ୍‌ଗେୟ୍ୟାକୁ ଗୋଟିଏ ରୋଜଗାରି ଧନ୍ଦା ଖୋଜି ଦେବାକୁ ନାରସେୟ୍ୟା ଦୃଷ୍ଟି ରଖିଥାଏ, ଯାହାକୁ ଖୋଜି ବାହାର କରି ସେ ତା ବନ୍ଧୁ-ଘରର ଘରଯୋଇଁ କରାଇ ପାରିଛି, ତା ଇଚ୍ଛା ତା'ର କେମିତି ଆହୁରି ମଙ୍ଗଳ ହେଉ । ନିଜ ଅଭିଜ୍ଞତାରୁ ସେ ତାକୁ ବୁଦ୍ଧି ଦେଲା, ମୂଲ ଲାଗିବାଠୁଁ ରିକ୍ସା ଟାଣିବା ଭଲ; ଏ ସହରରେ ରିକ୍ସାବାଲାଟିଏ ଦୈନିକ ଅନ୍ତତଃ

ଦଶଟଙ୍କାରୁ ପଚାଶ ଟଙ୍କା ବି ଆୟ କରିଥାଏ । ସେ ନିଜେ ଯେଉଁ ରିକ୍ସାଟି ଟାଣୁଥିଲି ତହିଁରେ ଅଳ୍ପେ ଅଳ୍ପେ ଜାଗ୍‌ଗେୟୁକୁ ରିକ୍ସାଟଣା ଶିଖାଇଲା, ଅଭ୍ୟାସ କରୁ କରୁ ଜଗ୍‌ଗେୟୁ ଶିଖିଗଲା । ତା'ପରେ ନାର୍ସେୟୁ ଜାନକାମ୍ମାକୁ ବୁଦ୍ଧି ଦେଲା ଯେ ସେ ନିଜେ ଜାମିନ୍ ରହି ଜାଗ୍‌ଗେୟୁ ପାଇଁ ବ୍ୟାଙ୍କ୍‌ରୁ ହଜାରେ ଟଙ୍କା କରଜ ଆଣୁ, ବ୍ୟାଙ୍କ୍ ତ ରିକ୍ସା ପାଇଁ ଋଣ ଦିଏ ହିଁ, ଜାନକାମ୍ମା କେତେ ଜଣାଶୁଣା ଲୋକଙ୍କ ଘରେ ଚାକିରି କରିଛି, ଦରକାର ପଡ଼ିଲେ ସେମାନେ ଅବଶ୍ୟ ଲେଖିଦେବେ ଯେ ସେମାନଙ୍କଠୁଁ କେତେ ବର୍ଷ ହେଲା ମାସକୁ ମାସ କେତେ ଦରମା ପାଏ, ତା ଆୟ ବିଷୟରେ ଏନ୍‌କ୍ୱାରି ହେଉ, ନାର୍ସେୟୁ ବି ସାକ୍ଷୀ ଦେବ, ଲୁହାପୋଛି କଲେ ଋଣ ମିଳିବ ହିଁ । ପ୍ରକୃତରେ ଋଣ ମିଳିଗଲା । ଜଣକଠୁଁ ଭଲ ରିକ୍ସାଟିଏ ସେତିକି ଟଙ୍କାରେ ନାର୍ସେୟୁ ଜଗ୍‌ଗେୟୁକୁ କିଣେଇ ଦେଲା । ଜଗ୍‌ଗେୟୁ ରିକ୍ସା ଚଲେଇ ବୁଲିଲା । ଜାନକାମ୍ମାର ଆନନ୍ଦ କହିଲେ ନ ସରେ । ଜୋଇଁଟି ତା'ର ସ୍ୱାଧୀନ ରିକ୍ସା ଚାଳକଟିଏ । ଜାନକାମ୍ମା ଜୋଇଁ ସଙ୍ଗେ କଥା ଛିଡ଼ାଇଥାଏ, ସେ ପ୍ରତିଦିନ ଯାହା ରୋଜଗାର କରିବ ତହିଁରୁ ଋଣ ଶୁଝିବା ବାବଦକୁ ପ୍ରତି ସପ୍ତାହରେ ଅବଶ୍ୟ ତା ହାତରେ କୋଡ଼ିଏ ଟଙ୍କା ଧରେଇ ଦେବ, ସେତକ ଏକାଠି କରି ନିଜେ ଜାନକାମ୍ମା ଯାଇ ପନ୍ଦର ଦିନରେ ଥରେ ବ୍ୟାଙ୍କ୍‌ରେ ପଇଠ କରି ଆସୁଥିବ, ଯେତେ ଚଞ୍ଚଳ ଋଣଟା ଶୁଝିଯାଏ ଭଲ, ବୋଝ ହାଲୁକା ହେବ । ଜାଗଗେୟୁ କଥା ରଖୁଥାଏ ।

ଦୁଇମାସ ଗଲା, ତା'ପରେ ଦିନେ ଜଗ୍‌ଗେୟୁ ରିକ୍ସା ନେଇ ଗଲା ଯେ ଆଉ ଫେରିଲା ନାହିଁ । କୁଆଡ଼େ କ'ଣ ବିପଦ ଆପଦ ହେଲା କି ବୋଲି ଜାନକାମ୍ମା, ରଙ୍ଗାମ୍ମା ଓ ସେମାନଙ୍କ ବନ୍ଧୁମାନେ ଆତୁର ହୋଇ ଚାରିଆଡ଼େ ଖୋଜି ବୁଲିଲେ । ସେ ଦିନ ଗଲା, ଆର ଦିନ ବି ଗଲା, କିଛି ପତ୍ତା ମିଳିଲା ନାହିଁ । ପୁଲିସ୍ ଥାନାରେ ଏତଲା ଦେଲେ, ଆଉ ଦିନାକେତେ ଖୋଜି ବୁଲିଲେ, କିଛି ଖବର ମିଳିଲା ନାହିଁ । ବାରଦିନ ପରେ ଖବର ପାଇଲେ, ଜାଗ୍‌ଗେୟୁ ତା ରିକ୍ସାକୁ ଆଉ ଜଣକୁ ଛ'ଶହ ଟଙ୍କାକୁ ବିକ୍ରୀ କରିଦେଇ ଟଙ୍କା ନେଇ ସାକ୍ଷୀ ରଖି ରସିଦ୍ ଦେଇ କୁଆଡ଼େ ଚାଲିଯାଇଛି । ରିକ୍ସା ତ ତା ନାଁରେ ଥିଲା, ସେ ବିକିଛି, ପୁଲିସ୍‌କୁ ଜଣାଇଲେ ସେ

ଯାହିଁକି କ'ଣ କରିବେ ? ଋକ୍ସାଟା ଅବଶ୍ୟ କାଗଜ ପତ୍ରରେ ବ୍ୟାଙ୍କ୍‌ରେ ବନ୍ଧା ରଖା ହୋଇଥିଲା, କିନ୍ତୁ ବ୍ୟାଙ୍କ୍‌ରେ କିଛି ଜଣାଇବାକୁ ସେମାନେ ଡରିଲେ ଭାବିଲେ—ବ୍ୟାଙ୍କ୍ ସଙ୍ଗେ ସଙ୍ଗେ ଚଣ୍ଟିରୁ ଧରିବ, କହିବ ଜାମିନ୍‌ଦାର୍ ତ ଅଛ, ଏଇ ସଙ୍ଗେ ସଙ୍ଗେ ଦେଇ ଆମର ଋଣଟଙ୍କା, ନଇଲେ ଜେଲ୍ ଦିଆଇବୁଁ । ଜଗ୍‌ଗେୟାର ଗାଁରେ ଚଳିସିବାକୁ ଜାନକାମ୍ମା ତା ନିଜ ଲୋକଙ୍କୁ ଚିଠି ଲେଖିଲା, ଉତ୍ତର ଆସିଲା ଯେ ଜାଗ୍‌ଗେୟା ଆଦୌ ତା ଗାଁକୁ ଆଉ ଲେଉଟି ନାହିଁ ।

ଜାଗ୍‌ଗେୟା ଆଦୌ ତାଙ୍କ ଘରେ ଘରଜୋଇଁଆ ରହିବାକୁ ଲୋଡ଼ି ନ ଥିଲା ଓ ସେ ଓଲୁ ନୁହେଁ । ସେ କିଛି ନ କହି ତା ସ୍ତ୍ରୀର ଭାବଭଙ୍ଗୀ ଗତି ବିଧି ଲକ୍ଷ୍ୟ କରି ମନେ ମନେ ଠିକଣା କରିଥିଲା ଯେ ସେ ତା ସହିତ ଘରକରି ରହିବା ଆଦୌ ସମ୍ଭବ ନୁହେଁ । କାଳକ୍ରମେ ସେ ଉଡ଼ନ୍ତା ଧୂଳିରୁ ତା ବିଷୟରେ ନାନା ସମ୍ବାଦ ସଂଗ୍ରହ କରି ମନେ ମନେ ରଖିଥିଲା । ବାଗ ଉଣ୍ଡି କିଛି ଗୋଟେଇ ପୋଟେଇ ସେ ନିଜ ବାଟ ଧରିଲା ।

ଜାନକାମ୍ମା ହାୟୁ ହାୟୁ କଲା ବହୁଦିନ, ନାର୍ସେୟା ସଙ୍ଗେ ଛିଣ୍ଡିଲା, କଜିଆ କଲା, କହି ବୁଲିଲା ଯେ ନାର୍ସେୟା ହିଁ ତା'ର ଏ ସର୍ବନାଶ କରେଇଲା, ଲୋକଟାକୁ ସେ ହିଁ ଜୁଟେଇ ଥିଲା, ବୋଧହୁଏ ଋକ୍ସାଟାକୁ ସେ ହିଁ ବିକେଇ ଦେଲା, କିଛି ଟଙ୍କାରୁ ନିଜେ ଭାଗ ନେଲା, ସେଇଟା ନିହାତି ଅବିଶ୍ୱାସୀ ଦୁଷ୍ଟ କୁଳବୁଡ଼ା ଲୋକ । ଦୁଇ ପରିବାର ଭିତରେ କଥାଭାଷା ବନ୍ଦ ହେଲା ।

ହିନାକେତେ ଯାକେ ଗଙ୍ଗମ୍ମା ତା ମା'କୁ ଦୋଷଦେଲା, ଶୋଧିଲା ଗୋଟାଏ ଯାହାତାହା ତା ସଙ୍ଗରେ ତାକୁ ବିଭା କରେଇ ଦେଇ ତା ଜୀବନଟାକୁ ସେ ଉଜାଡ଼ି ଦେଲା ବୋଲି କହିଦେଲା । ନିଜର ଏ ଅପମାନ ଏ ହଟହଟା ପାଇଁ ପରକୁ ଦାୟୀ କରି ସେ ସତେ କି ଦୋଷ ଛଡ଼େଇ ହେଲା, କିନ୍ତୁ ଯାହା କରୁ ବହୁତ ଦିନ ପର୍ଯ୍ୟନ୍ତ ତା'ର ଆଉ ସବାଗ ରହିଲା ନାହିଁ, ମନଟା ମରିଗଲା । ସେ କାମ ନ ଥିଲେ ଆଉ ଘରୁ ବାହାରେ ନାହିଁ, ହୁମ୍‌ହୁମ୍ ହୁଏ ନାହିଁ, ଅକାରଣରେ ଚିଡ଼ି ଉଠେ ନାହିଁ, ମା'ଭ

କଥା ମାନେ, ତା ନିର୍ଦ୍ଦେଶକୁ ଅପେକ୍ଷା କରେ । ଆଗପରି ସେ ଆଉ ତା ସାନ ଭଉଣୀର ଦୋଷ ବାଛନ୍ତି ନାହିଁ କି ବାରକଥାକୁ ନ ଶୁଣିଲା ପରି ଚାଲିଯାଏ ନାହିଁ । "ସୁନା ଝିଅଟାଏ ମୋର", ତା ମା' ଭାବୁଥାଏ, "ତା କପାଳ ସିନା ଏ ଦୁଃଖ ଦେଲା ! ଭାଗ୍ୟକୁ କାହା ହାତ ଅଛି !"

କିନ୍ତୁ ପୁଣି ସବୁ ପୂର୍ବ ଗତିକୁ ଫେରିଗଲା, ରଙ୍ଗାମ୍ମା ଯେପରି ଥିଲା ସେପରି ହୋଇଗଲା, ଏ ଘରେ ରହିଥାଇ ବି ସେ ସତେକି ଜଣେ ସ୍ୱାଧୀନ ମଣିଷ, କାହା କଥା ମାନିବାକୁ ବାଧ୍ୟ ନୁହେଁ । ଜାନକାମ୍ମା ଝିଅର ୨୦-୧-୮୪ ଦୁର୍ଭାଗ୍ୟ ପାଇଁ ହିନସିନ୍ ହୁଏ, କିନ୍ତୁ ହାତଗୋଡ଼ ଜାକି ଆପଣା ଦୁର୍ଭାଗ୍ୟ କଥା ଭାବି ଭାବି ସମୟ ନଷ୍ଟ କରିବାକୁ ତା'ର ବେଳ ନାହିଁ, ଅରକ୍ଷିତ ଦରିଦ୍ର ହୋଇ ନିଜ ପରିବାରଟିକୁ ଦୈନ ନିତିଦିନର ନାନା ସମସ୍ୟା ଭିତରେ ବଞ୍ଚିବା ହିଁ ତା'ର ସମୁଦାୟ ଉଦ୍ୟମକୁ ଓଟାରି ନିଏ । ବୁଢ଼ା ବହିକାଳୁ ଖାଲି ପୋଷ୍ୟଟିଏ, ତା'ର କିଛି ରୋଜଗାର ନାହିଁ, ଓଲଟି ତା ପାଇଁ ଔଷଧ ଖର୍ଚ୍ଚ ଲାଗି ରହିଥାଏ । ସଞ୍ଚୟ ସବୁ ସରି ଆସିଲାଣି । ପ୍ରଧାନ ହଳଆ ପଡ଼ିଲାଣି ରିକ୍ସା କିଣା ଯୋଗୁଁ ବ୍ୟାଙ୍କରୁ ସେହି ହଜାରେ ଟଙ୍କା ଋଣର କିସ୍ତି ଓ୍ୱାରି ଶୁଝାଣ, ପ୍ରତି ମାସରେ ପେଟରୁ କାଟି କାଟି ଶୁଝିଲା ବେଳେ ଦେହରୁ ରକ୍ତ ଟାଣି ଶୁଝିଲା ପରି ଲାଗେ, ଲୁହ ଝରୁଥାଏ । ଜାନକାମ୍ମା ପ୍ରତିଜ୍ଞା କରିଛି, ଯାହା ହେଉ ପଛେ, ମରି ସରି ତାକୁ ଶୁଝିଦେବ, ସେଥିପାଇଁ ବଦ୍‌ନାମ୍ ମୁଣ୍ଡେଇବ ନାହିଁ । ରୋଜଗାର କରିବାକୁ ଦୁଇଜଣ ମାତ୍ର, ସେ ଆଉ ରଙ୍ଗାମ୍ମା । ରାଜେଶ୍ୱରୀକୁ ଏକୁଟିଆ କେହି ନିଯୁକ୍ତି ଦିଅନ୍ତି ନାହିଁ, ପିଲା ଲୋକ । ରଙ୍ଗାମ୍ମା ପାଉଥିବା ଦରମାରୁ କେତେ ମା' ହାତରେ ଦେବ, କେତେ ନ ଦେବ, ସେଥିପାଇଁ ତା ଉପରେ ଜାନକାମ୍ମା ବଳ ଖଟେଇ ପାରିବ ନାହିଁ, ତାକୁ ମନେଇ ଫୁସୁଲେଇ କିଛି-ପୋଛି ଯାହା ପାଉଥିବ । ତେଣୁ ଝିଅ ଉପରେ କର୍ତ୍ତୃତ୍ୱ ଜାରି କରୁକରୁ ସେ ଆଗପଛ ଭାବେ, କୋହଳ ହୋଇଯାଏ ଓ ଗୋଳେଇ ପୋଳେଇ ହୁଏ ।

ସେ ଲକ୍ଷ୍ୟ କରୁଥାଏ ରଙ୍ଗାମ୍ମା ଗୋଟିଏ ଯୁବକ ସଙ୍ଗେ ବେଶୀ ବେଶୀ ମିଶୁଥାଏ, ଯୁବକଟି ବି ତା ଗୃରକରେ ଗୁରେଇ ଭୁରେଇ ହୋଇ ବୁଲୁଥାଏ । କ୍ରମେ ସେ ଜାଣିଲା ଦିହେଁ ମିଶି ସିନେମା ଦେଖି କେତେ-ବେଳେ ଯାତ୍ରା ଦେଖି ଯାଉଛନ୍ତି । ସେ ରଙ୍ଗାମ୍ମାକୁ ପଚାରିଲା, ରଙ୍ଗାମ୍ମା

ଆଦୌ ଡରିଲା ନାହିଁ କି ଲାଜ କଲା ନାହିଁ । କହିଲା—ତୁ ମୋ ପାଇଁ ଦି' ଦି' ଥର ବର ଠିକଣା କରି ଯାହା କଲୁ ତ ଜାଣିଲୁ । ଏଥର ମୋ ଭାଗ୍ୟ ମୁଁ ଠିକଣା କରିବି । ଦେଖୁଚୁ ତ, ଭଲ ଚେହେରା, ଭଲ ବ୍ୟବହାର, —ମୁଁ ଜାଣେ ସେ ଦର୍ଜି କାମ କରେ । ସେ ଯେଉଁଠି କାମ କରୁଚି ଗଲେ ଦେଖିବୁ । ଭାରି ଭଲ ମଣିଷ । ବାହା ହୋଇ ନାହିଁ । ତା'ର ମତେ ମନ, ମୋ ମନ ତାକୁ, ଆମେ ବାହା ହେବୁଁ ଠିକଣା କରିଚୁ । ସେଇ ତ ହେବ ମୋ ବର, ତା ସଙ୍ଗରେ ବୁଲିବି ନାହିଁ କାହିଁକି ?"

"ସେ ତ ଓଡ଼ିଆ ଲୋକ ଝିଅ, କି ଜାତି ଜଣା ନାହିଁ, ଘର ଦୁଆର କିଛି ଜଣା ନାହିଁ—"

"ଥାଉ ଥାଉ ସେଗୁଡ଼ା ତୁ କହନା, ଆମେ କାମ କରି ଖାଇବା ଲୋକ, ମଣିଷ ଭଲ କି ମନ୍ଦ ଜାଣିଲେ ହେଲା, ଆଉ ସବୁ କିଏ ପଚାରେ ?"

"ଛି ଛି ସେଗୁଡ଼ା କ'ଣ କହୁଚୁ ଝିଅ ? ଆମର ଜାତି କୁଳ ଧର୍ମ ସମାଜ ମର୍ଯ୍ୟାଦା ନାହିଁ ?"

"ସେଗୁଡ଼ାକ ତୁ ରଖୁଥା, ମୁଁ ତାକୁ ବାହା ହେବି ।"

ଜାନକାମ୍ମା କେଉଁଠୁ ବୁଝିଆସିଲା, ସେ ଯୁବକଟି, ତା ନାଁ ଅର୍ଜୁନ ଗୋଚ୍ଛାଏତ୍, ଜାତିରେ ସେ ହରିଜନ ଲୋକ । ଝିଅକୁ କହିଲା । ରଙ୍ଗାମ୍ମା କହିଲା "ଅର୍ଜୁନ ଗୋଚ୍ଛାଏତ୍ ତା ନାଁ ଯେ, ସେ ତ କହୁଥିଲା ସେମାନେ କ'ଣ କ୍ଷତ୍ରିୟ ଜାତି । ସତରେ ଯଦି ତା ନ ହୋଇ ହରିଜନ ହୋଇଥିବ ହୋଇଥାଉ, ଦେଖୁଚୁ ତ, ଚେହେରାରେ, ପୋଷାକରେ, କଥାଭାଷାରେ, ବ୍ୟବହାରରେ, —କେଉଁଥିରେ ସେ କେଉଁ ବାବୁଠୁ ଊଣା କି ? କାହିଁକି ଭୁଟା ଏମିତି ହେଉଚୁ ?"

"ଖବର୍ଦ୍ଦାର୍", ତା ମା କହିଲା, "ଆଉ ଥରେ ତା ସାଙ୍ଗେ ମିଶିଚୁ କି ସେ ଟୋକାକୁ ମୁଁ ସାହିବାଲଙ୍କୁ କହି ଚଟଣି କରେଇ ଦେବି ।"

ତା'ଘରେ ଖୁବ୍ କଳଗୋଳ ଲଗିଗଲା । ଜାନକାମ୍ମା ବି ହତାହତ ଜ୍ଞାନ ଛାଡ଼ିଦେଇ ପାଟିକରି ସାହିର ନାନା ଲୋକଙ୍କୁ ଅର୍ଜୁନ ବିରୁଦ୍ଧରେ ମତାଇଲା । ଯୁବକଟି ସେ ସାହିକୁ ନଆସିଥାଏ । କେତେ ଲୋକ ତା ବିରୁଦ୍ଧରେ ରଡ଼ି ଦେଲେ ।

ଗୋଟିଏ ରାତି ପାହିଲା, ସକାଳକୁ ରାଙ୍ଗାମ୍ମା ଆଉ ଦିଶିଲା ନାହିଁ । ଅର୍ଜୁନ ଗୋଛାଏଚ ବି ଚାଲି ଯାଇଥିଲା ।

ଜାନକାମ୍ମାର ଲଜ୍ଜା ଆଉ ଲୁଚି ରହିପାରିଲା ନାହିଁ । ଦୁହିଁଙ୍କୁ ଖୋଜା ଲଗିଲା । ପନ୍ଦର ଦିନ ପରେ ଦୁହିଁ ଦେଖା ପଡ଼ିଲେ ଅଳ୍ପ ଦୂରରେ ଅନ୍ୟ ଗୋଟିଏ ବିଡ଼ିରେ । ରାଙ୍ଗାମ୍ମା ଶୁଣାଇଦେଲା "ଏହି ମୋର ସ୍ୱାମୀ, ମୋ ମନଇଚ୍ଛାରେ ମୁଁ ଏହାଙ୍କୁ ବାଛି ନେଇଛି, ଏହା' ସଙ୍ଗରେ ଅଛି, ମୁଁ ସାନପିଲା ନୁହେଁ, ମୋ ବୟସ ଚାଳିଶି, ମୁଁ କାମ କରେ ରୋଜଗାର କରେ ନିଜ ରୋଜଗାରରେ ଚଳେ । ମୁଁ କାହାରି ଆଶ୍ରିତା ନୁହେଁ । ମୋ ଖୁସି ମୁଁ ଯାହାକୁ ବାଛି ନେଇଛି । କିଏ ମୋ ସଙ୍ଗେ ଲାଗିଲେ ମୁଁ ସରକାରକୁ ଜଣେଇବି ।"

ଜାନକାମ୍ମା କାନ୍ଦି କାନ୍ଦି ଫେରି ଆସିଲା, ତା ସଙ୍ଗରେ ତା'ର ଦି'ଜଣ ବନ୍ଧୁ ଲୋକ ଯାଇଥିଲେ । ସେମାନେ ଚିଡ଼ି ଆସିଲେ "ଆରେ ଟୋକା, ତୁ ଏ ରାଜ୍ୟ ଛାଡ଼ି ଜୀବନ ନେଇ ପଳା, ଯଦି ରହିବୁ ତେବେ ଆମେ ସମସ୍ତେ ଆସି ତତେ ଜୀବନରୁ ମାରି ତୋ ରକ୍ତ ଚାଟି ନେବୁଁ । ଆମକୁ କ'ଣ ଏତିକି ଲୋକ ଭାବିଲୁ ? ଦେଖିବୁ ଆମ ବଳ କେତେ ଅଛନ୍ତି କେତେ ।"

ଜାନକାମ୍ମାର ସାଥି ଲୋକେ ପରସ୍ପରକୁ ମତାମତ କରି ସଜ ହେଲେ ଗୋଟାଏ କ'ଣ କରିବେ ବୋଲି । ଅବସର ପାଇଲେ ମନ୍ତ୍ରଣା କରନ୍ତି, ପୁଣି ନିଜ ଧନ୍ଦାରେ ମାତନ୍ତି । କ୍ରମେ ସେ ବିଷୟରେ ଭେଟାଭେଟି ହେବା ମନ୍ତ୍ରଣା କରିବା ବି କମି କମି ଆସିଲା । ରାଙ୍ଗାମ୍ମା ଫେରିଲା ନାହିଁ । ଜାନକାମ୍ମାର ମୁଣ୍ଡରେ ଚଡ଼କ ପଡ଼ିଲା—ଝିଅ ଗଲା, କୁଳରେ କଳଙ୍କ ବୋଳିଦେଇ ଗଲା, ଯେ ପଚାରିଲେ କହେ "ମରିଗଲା", କାନ୍ଦେ, କହେ— "ସେ ତ ମଲା ଗଲା ଆମେ ଖାଇବୁ କ'ଣ ? ବଞ୍ଚିବୁ କେମିତି !" ବ୍ୟାଙ୍କ୍‌ର ଋଣ ବାକି ଅଛି, ଶୁଝିବାକୁ ସେ ଜଣେ । ଘର ଚଳେଇବାକୁ ସେ ଜଣେ । ଭାଉ ବଢ଼ି ଚାଲିଛି, ତା ସହିତ ଅଭାବ । ବେମାର ପଡ଼ି ପଡ଼ି, ଉପାସ ରହି ଅଖାଦ୍ୟ ଖାଇ ଦୁଃଖରେ ସିଝି ସିଝି ତା'ର ବି ସ୍ୱାସ୍ଥ୍ୟ ଭାଙ୍ଗିଗଲାଣି, ସେ ଶୁଖିଗଲାଣି, ଅଭ୍ୟାସ ଥିବାରୁ କଳ ଘର କାମ କରିଯାଏ ।

ତାଙ୍କୁ ଆନନ୍ଦ ଦିଏ ସାନ ଝିଅ ରାଜେଶ୍ୱରୀ । ତା'ର କଅଁଳ ଆଦ୍ୟ ଯୌବନ, ସେ କୁହାର ବୋଲରେ, ପରିଶ୍ରମୀ ବାପ ମା'ଙ୍କ ହାତ ବାରଣୀ, ମା'ର ବଦଳା ହୋଇ ପ୍ରତିଦିନ ଉପରେ ଦି'ଓଳି କାମ କରିଦିଏ, ତା ଯୋଗୁଁ ଜାନକାମ୍ମା ସାତଟି ଘରେ କାମ ଆଦରିଛି । ତହିଁରୁ ଗୋଟିଏ କାମ ଗୋଟିଏ କୁମ୍ପାନୀ ଅଫିସ୍ କୋଠାରେ ସକାଳେ ଦି'ଘଣ୍ଟା ଓ ରାତି ବେଳେ ଘଣ୍ଟାଏ ମାସକୁ ଦରମା ଶହେ ଟଙ୍କା । ଅନ୍ୟତ୍ର ଜାନକାମ୍ମା ଯାଇ ମୁହଁ ମାରି ଆସେ, କେଉଁଠି ବା ଉପରେ କାମ କରେ, ତା ପାଇଁ ଅନ୍ୟ ସବୁ କାମ ରାଜେଶ୍ୱରୀ କରେ ।

ମାସେ ପରେ ଦିନେ ହଠାତ୍ ଆସି ପହଞ୍ଚିଗଲା—ଦ୍ୱିପ୍ରହର ବେଳ, ସକାଳ ଓଳିର କାମରୁ ଫେରି ଜାନକାମ୍ମା ଓ ରାଜେଶ୍ୱରୀ ଘରେ ଥା'ନ୍ତି । ଯେପରି କିଛି ହୋଇ ନାହିଁ ସେହିପରି ସହଜ ଭାବରେ ଆସି ଘର ଭିତରେ ପଶି ରାଙ୍ଗାମ୍ମା ଡାକ ଛାଡ଼ିଲା, "ଭୋକ କଲାଣି ଖାଇବାକୁ ଦେ ମା' ।" ଲାଗିଗଲା କୁଣ୍ଢାକୁଣ୍ଢି କନ୍ଦାକନ୍ଦି, ରାଙ୍ଗାମ୍ମା ଖାଇଲା ପିଇଲା ରହିଲା । ସେ ତା କାହାଣୀ ବେଶୀ ଲମ୍ବେଇଲା ନାହିଁ । କହିଲା—ସେ ଦର୍ଜି ଟୋକା ତ କେଉଁକାଳୁ ପଳେଇଲାଣି, ଯେଉଁଦିନ ଜାନକାମ୍ମା ଓ ଦି'ଜଣ ପଡ଼ିଶା ଯାଇ ତାକୁ ଠିକିଲେ ମାରିଦେବାକୁ ଧମକେଇଲେ ତହିଁ ଆରଦିନଠୁଁ, ତା'ପରେ ସେ ତା'ର ସେଠି ଥିଲା, ମୂଲ ଲାଗୁଥିଲା ଚଳୁଥିଲା, ଆଉ ଏକୁଟିଆ ସେଠି ପଡ଼ି ରହିବାକୁ ମନ ଲାଗିଲା ନାହିଁ ଚାଲି ଆସିଲା ।

"ତୁ ପଳେଇ ଆସିଲୁ ନାହିଁ କାହିଁକି ?"

"ତେମେ ସବୁ ତ ରାଗରେ ଫଁ ଫଁ ହଉଥିଲ, ଆସିଥାନ୍ତି କ'ଣ ମାଡ଼ଗୋଇଠା ଲାଗିବାକୁ ?"

ସେ କଳାକାଠ ପଡ଼ି ଯାଇଥାଏ, ଆଖି କୋରଡ଼ରେ ପଶିଥାଏ, ମୁଣ୍ଡବାଳ ଟିକିଏ ପାତଳ ଦିଶୁଥାଏ, କପାଳ ଦିଶୁଥାଏ ହାଡ଼ୁଆ, ଦେହ ଝାଉଁଳି ଯାଇଥାଏ, କାଉ ଗୋଡ଼ ପରି ହାତଗୋଡ଼ ।

"ଦେହ ଭଲ ନାହିଁକି ଝିଅ ?"

"ଭଲ ଆଉ କାହିଁକି ରହିବ ? ଯାହା ହଉଚି ହଉ ।"

ପୁଣି ଚାଲିଲା ତା'ର ଚାକିରୀ । ପୁରୁଣା ପରିସ୍ଥିତିରେ ଆପଣା ଘରେ ରଙ୍ଗାମ୍ମାର ସ୍ୱାସ୍ଥ୍ୟ ଚଞ୍ଚଳ ଚଞ୍ଚଳ ଟେକି ଉଠିଲା, ଆଗର ସ୍ୱାସ୍ଥ୍ୟ ଲାବଣ୍ୟ ନ ଥିଲା, କିନ୍ତୁ ଯାହା ହୋଇ ଫେରିଥିଲା ସେଭଳି ଦୟନୀୟ ବି ଆଉ ନୁହେଁ । ପୁଣି ସେ କାମ ଖୋଜି ବାହାରିଲା । ଆଗ ଆଗ ଦୁଇ ତିନି ଘରେ କାମ ପାଇଗଲା, ଏ ସହରରେ ଦିନୁଦିନ ଲୋକ ବଢ଼ୁଛନ୍ତି, ନାନା ଅଫିସ୍, ନାନା ଇଣ୍ଡଷ୍ଟ୍ରି, ନାନା କମ୍ପାନୀ, ନାନା ବ୍ୟବସାୟ ବଢ଼ୁଥିବାରୁ ନୂଆ ନୂଆ ପରିବାରମାନେ ରହି ଖୋଜୁଛନ୍ତି ଠିକା ଚାକରାଣୀ । ତା'ପରେ ଦିନେ ରଙ୍ଗାମ୍ମାକୁ ଗୋଟିଏ ଘରେ କାମଟିଏ ମିଳିଗଲା ଯେ ଜଣେ ପଞ୍ଜାବୀ ବ୍ୟବସାୟୀଙ୍କ ପରିବାରରେ ସେ ରହିବ କାମ କରିବ । ତା'ର ରହିବା ପାଇଁ ଅଲଗା ବଖରାଟିଏ ତାକୁ ମିଳିବ, ସେମାନେ ଚା'ଜଳଖିଆ ଓ ଦି'ଓଳି ଖାଦ୍ୟ ଦେଉଥିବେ, ଲୁଗାପଟା ଦେଉଥିବେ, ଏସବୁ ଛଡ଼ା ପ୍ରତି ମାସରେ ତାକୁ ଦରମା ଦେଉଥିବେ ଦେଢ଼ଶହ ଟଙ୍କା ।

ତାଙ୍କ ଘରେ ତିନିମାସ ରହୁ ରହୁ ରଙ୍ଗାମ୍ମାକୁ ଛଟପଟ ଲାଗିଲା । ତାଙ୍କଆଡ଼ୁ କିଛି ତ୍ରୁଟି ଥିଲା ତା ନୁହେଁ । ତିନିଦିନେ ଚାରିଦିନେ ବାପ ମା'ଙ୍କୁ ଦେଖି ଆସିବି କହିଲେ ସେମାନେ ଛାଡ଼ି ଦିଅନ୍ତି । ଜାନକାମ୍ମା ଖୁସି ହୋଇ ଦେଖେ ଝିଅ କେଡ଼େ ସଫା ସୁତୁରା ଦିଶୁଛି, ଭଲ ଲୁଗାପଟା ପିନ୍ଧୁଛି, ଖାଇବା ପିଇବା ଚଳଣି ବିଷୟରେ ଯାହା କହେ ସେପରି ଚଳଣି ଜାନକାମ୍ମା ଭାବେ ଭାଗ୍ୟରେ ଥିଲେ ମିଳେ । କିନ୍ତୁ ରଙ୍ଗାମ୍ମା ଭାବୁଥାଏ ଯେ ବୃଥା ସେ ନିଜକୁ ପର ଘରେ ବନ୍ଧନରେ ପକାଇଛି, ସେ ଘରେ ସ୍ତ୍ରୀ ଲୋକମାନେ ନିଜେ ଯେପରି ପରିଶ୍ରମୀ ସେମାନେ ଚାହାନ୍ତି ସେ ବି ସବୁବେଳେ କିଛି ନା କିଛି କାମ କରୁଥାଉ, ତା ହାତ ଖାଲି ହେଲା ମାତ୍ରେ ନୂଆ ନୂଆ କାମ କରିବାକୁ ତାକୁ ବରଗୁଥାନ୍ତି । ସେଠି ଜୀବନ ବି ଘଣ୍ଟି-ନିୟମ ବନ୍ଧା, ନିଜ ମନଇଚ୍ଛା କିଛି କରିବା ନ କରିବା, ବସିବା ବୁଲିବା ଚଳିବ ନାହିଁ । ସେ ବୁଝେ—ସେମାନେ ତାକୁ ସେମାନଙ୍କ ଆପଣାର ଜଣେ ବୋଲି ଭାବୁଛନ୍ତି । "କିନ୍ତୁ କାହିଁକି ଏମାନଙ୍କ ଆପଣାର ହେବି ମୁଁ ? କାହିଁକି ଖାଲି ହାତ ଗୋଡ଼ରେ ନୁହେଁ, ମନ ପ୍ରାଣ ଦେଇ ଏମାନଙ୍କ ସେବା କରି ରହିଥିବି ? ଆଗ ପରି ଠିକା କାମ କରି ମୋର ମୁଁ ସ୍ୱାଧୀନ ନ ରହିବି କାହିଁକି ?" ରାତିରେ ସେ ତା ବଖରାରେ ଏକୁଟିଆ ଥିଲାବେଳେ ସେଠି ତା

ନିଜ ଜୀବନ ତାକୁ ଖାଇ ଗୋଡ଼ାଏ, ଫମ୍ପା ଲାଗେ, ତା'ର ସବୁ ହତାଶା ମନେପଡ଼େ, ନିତାନ୍ତ ନିଗ୍ଗଟିଆ ଓ ନିଃସହାୟ ଲାଗେ । ସେମାନଙ୍କ ପ୍ରତି ଈର୍ଷା ଓ ହିଂସାରେ ତା'ର ମନ କୁହୁଳି ଉଠେ, ସେତେବେଳେ ମନେ ମନେ ଅନୁଭବ ହୁଏ ଗୋଟାଏ ଅବଲମ୍ବନ ।

ମା' ବୁଝିପାରେ ନାହିଁ କାହିଁକି ସେଠି ତା'ର ଅଶାନ୍ତି । ପ୍ରତିଦିନ ଘରେକେ ଦି'ଦି'ଥର ଲେଖାଁ ପାଞ୍ଚ ଛଅ ଜଣଙ୍କ ଘରକୁ କାମ କରିବାକୁ ଯିବା ଅପେକ୍ଷା ସେୟା କ'ଣ ଭଲ ନୁହେଁ ? ସେ କହେ—କିନ୍ତୁ ଛଅଟି ମାସ ସେଠି କାମ କରି ଗଙ୍ଗାମ୍ମା ବାହାରି ଚାଲି ଆସିଲା, ପୁଣି ମା' ପାଖେ ରହିଲା ଓ ଠିକା କାମ ଖୋଜି ଧରି ନେଲା । କାମ ନ ଥିବା ବେଳେ ମନଇଚ୍ଛା ବୁଲିଲା, ଗପିଲା, ଫୁର୍ତ୍ତି କଲା, ଯେପରି ତା'ର ଇଚ୍ଛା । ସେ ଭାବିପାରୁ ନ ଥିଲା ଯେ ପୁଣି ତାକୁ ବରଟିଏ ମିଳିଯିବ ଓ ସୁଖରେ ସେ କାହାର ଘରଣୀ ହୋଇ ଜୀବନ ବିତାଇବ—ତାକୁ ଲାଗୁଥାଏ ସେପରି ତା'ର ଭାଗ୍ୟ ନାହିଁ, ଗୋଟାଏ ନୈରାଶ୍ୟ" ତା'ର ଝିଲ ଶୁଖାଇ ଦେଇଥାଏ । ତା ମନରେ କାମନାର ଶିଖା ନିଆଁ ଠାଏ ଠାଏ ଜଳି ଉଠେ, ନାନା ଧାରଣା, ନାନା ସ୍ୱପ୍ନ ଆଣିଦିଏ । ସେ ଏକର ସେକର ଚହଲିଯାଏ । କିନ୍ତୁ କାଳେ କାହାଠୁଁ କି ରୋଗ ଡେଇଁବ ବୋଲି ସେ ଡରେ ଓ କେତେବେଳେ କାହା ଆଡ଼କୁ ଢଳି ଆସିଲା ବେଳେ ନିଜ ଅନୁଭୂତିରୁ ଅର୍ଜି ଥିବା ଆଉ ଏକ ପ୍ରକାର ତିକ୍ତତା ତା ମନରେ ବିଷ ବୋଳିଥାଏ—ଯେ ଏଗୁଡ଼ାକ ଖାଲି ଖୋଜନ୍ତି ନିଜର ମଉଜ, ସେହି ଘଡ଼ିକ, କିନ୍ତୁ ଏମାନେ ବାରବୁଲା କୁକୁରଗୁଡ଼ାକ, ପ୍ରକୃତିରେ ସ୍ନେହ ଶରଧା ନ ଥାଏ, ଲୋଭୀ ସ୍ୱାର୍ଥପର ହିଂସ୍ରକ ପଶୁ ।

ଏହିପରି ଭାବୁ ଭାବୁ, ଓଠରେ ଚତୁରପଣର ଅବିଶ୍ୱାସୀ ହସ ଫୁଟାଇ ଫୁଟାଇ ତଥାପି ସେ ନିଜ ପ୍ରବୃତ୍ତି ତାଡ଼ନାରେ କେତେବେଳେ କେଉଁ ପୁରୁଷ ଆଡ଼କୁ ଆଉଜି ପଡ଼େ, ପୁଣି ନିଜକୁ ସେକ ଖସି ପଳାଇ ହାଇଁପାଇଁ ହୁଏ । ଜଣେ ଭଦ୍ରଲୋକଙ୍କ ଘରେ କାମ କରିବାକୁ ଯାଇ ସେହିପରି ଅବସ୍ଥାରେ ଥରେ ସେ ତାଙ୍କ ସ୍ତ୍ରୀଙ୍କ ହାବୁଡ଼େ ପଡ଼ି ଅପମାନ ପାଇ ତଡ଼ା ଖାଇଥିଲା । ତାଙ୍କ ଶେଷେଇଆ ଟୋକାଟି ମଫସଲର ଯୁବକଟିଏ, ସହରକୁ ଆସିଥିଲା କୌଣସି ସ୍ଥାୟୀ ସରକାରୀ ଚାକିରିଟିଏ କାଳେ ମିଳିଯିବ ବୋଲି, ଗଙ୍ଗାମ୍ମା ତାକୁ ତା' ହାବଭାବରେ ଆକୃଷ୍ଟ କରି

ତାଠୁଁ ମନଇଚ୍ଛା ଗୁ' ଜଳଖିଆ ଓ କେତେବେଳେ କେଉଁ ସୁଆଦିଆ ଖାଦ୍ୟ ଆଦାୟ କରୁଥିଲା, କ୍ରମେ ଯୁବକଟିର ସାହସ ବଢ଼ି ବଢ଼ି ଆସୁଥିଲା ଓ ଏ ଖେଳରେ ଅଭିଜ୍ଞ ଗଙ୍ଗାମ୍ମା ଭାବୁଥିଲା ଯେ ଟୋକାଟିଠଁ ସେ ଆହୁରି ନାନା ପ୍ରକାର ସୁବିଧା ଓ ଭେଟି ପାଇ ପାରିବ, ତା ସଙ୍ଗେ ନିକିଏ ଖେଳ ବି ଖେଳ ହେବ । କିନ୍ତୁ ସେଦିନ ଦି'ପହରେ ଏକୁଟିଆ ପାଇ ଯୁବକଟି ତାକୁ ଠିଆ ଠିଆ ପଛଆଡ଼ୁ ଟିକିଏ ଯାବୁଡ଼ି ଧରିଥିଲା ଓ ସେତିକିବେଳେ ସାଆନ୍ତାଣୀ ସାମ୍ନା ଆଡ଼ୁ ପଶି ଆସିଲେ, ସେତିକିକ୍ଷଣି ଦିହେଁ ତାଙ୍କ ଘରୁ ତଡ଼ା ଖାଇଲେ ।

ଗଙ୍ଗାମ୍ମାର ହାତ ଖାଲି ପଡ଼ିଲା ନାହିଁ, ମା' ପାଖରେ ସେ ଘର ବିଷୟରେ ନାନା ବଦ୍‌ନାମ୍ ଗାଇ ସେ ଘରକୁ ସେ ଆଉ କାମ କରିବାକୁ ଯିବନାହିଁ ବୋଲି କହିଲା । କିନ୍ତୁ ଜାନକାମ୍ମାର ସେ ଗୋଟିଏ ପୁରୁଣା ଘର, ପୁରୁଣା ଘର ଛାଡ଼ିବାକୁ ତା'ର ଇଚ୍ଛା ନୁହେଁ । ସେ ଭାବେ— ସଂସାରରେ ପୁରୁଣା ଚିହ୍ନାଜଣା ଓ ସ୍ନେହ ସମ୍ବନ୍ଧରେ ଗୋଟାଏ ସ୍ୱତନ୍ତ୍ର ମୂଲ୍ୟ ଅଛି, ସେ ନିଜେ ଗଲା, ଅଭିଯୋଗ ଶୁଣିଲା, ସେମାନେ ଓଲଟି ତାକୁ ଖୁସାମତ କଲେ "ଯାହା ହବାର ତ ହେଲା, ତୋ ଝିଅକୁ ଆ୍ନ୍ଟ କର, ସେ ଆଉ ନ ଆସୁ, ତୁ ଆ ବା ତୋର ସାନଝିଅକୁ ପଠା ।" ଝିଅ ତରଫ ହୋଇ ସେ ବୁଝେଇଲା, "ନିଶ୍ଚୟ ସେ ବଦ୍‌ମାସ୍ ଗୋଷ୍ଠୀୟା ଟୋକା ତାକୁ ଆକ୍ରମଣ କରିଥିଲା, ମୋ ଝିଅଟା ତ ସୁନାଟା, ଏଠୁ ତା ମନ ଭାଙ୍ଗି ଯାଇଛି, କେତେ କହିଲି, ଆସିବାକୁ ମନାକଲା । ଯାହାହେଉ ସେ ଟୋକାଟାକୁ ତଡ଼ିଛ ଭଲ କରିଛ ମା, ଏଥର ମୁଁ କି ଗଜେଶ୍ୱରୀ ଆସି ତୁମ ଘରେ କାମ କରିଦେଇ ଯାଉଥିବୁ ।" କିନ୍ତୁ ଜାନକାମ୍ମା ମନେ ମନେ ମରିଗଲା, ଲୁହ ପୋଛି ପୋଛି ଭାବିଲା, "କି କପାଳ ଝିଅଟାର ! ଝିଅଟାର କାହିଁକି ହେବ, କି କପାଳ ମୋର !" ସେ ଭାବିଗଲା, ଗଙ୍ଗାମ୍ମାର ହଟହଟା ଏତିକିରେ ସରିନାହିଁ, ସେ ବାରମ୍ବାର ଏମିତି ଗୋଡ଼ ଖସୋଉଥିବ, ବାରମ୍ବାର ବିପଦରେ ପଡ଼ୁଥିବ, ଶେଷରେ କ'ଣ ସର୍ବନାଶ ହେବ କିଏ ଜାଣେ ?

ଦିନେ ସାନ୍ଧ୍ୟକ ଆସିଥିଲା ଗୋଟିଏ ଜୀର୍ଣ୍ଣଶୀର୍ଣ୍ଣ ମାଗିଖାଇ ଯୁବତୀଟିଏ, ଗୁଡ଼ିରେ ଯାକିଥିଲା ଦେଡ଼ବର୍ଷର ହୃଷ୍ଟପୁଷ୍ଟ ପୁଅଟିଏ । ସ୍ତ୍ରୀ

ଲୋକଟି ଏପରି ରୋଗିଣା ଓ ଏପରି ଦୁର୍ବଳ ଯେ ଛୁଆଟିକୁ ନେଇ ଚାଲି ଚାଲି ଯିବାକୁ ବି ତାକୁ କଷ୍ଟ ଲାଗୁଥାଏ ।

“କେଡ଼େ ଗୁଲୁଗୁଲିଆ ପୁଅଟିଏ ହୋଇଛି !” ଦି'ପହରେ କାମକରି ଲେଉଟି ଆସୁଥିବା ବେଳେ ଦେଖି ଗଙ୍ଗାମ୍ମା କହିଲା, “ହଇଲୋ, ତୋ ଅବସ୍ଥା ତ ଏମିତି ପୁଅ'କୁ ବଞ୍ଚେଇବୁ କେମିତି ?”

ସ୍ତ୍ରୀ ଲୋକଟି ବି ଆନ୍ଧ୍ରର । କହିଲା, “ଯେ ନିଅନ୍ତା ବିକି ଦିଅନ୍ତି, ନ ହେଲେ ମୁଁ ତ ବାଟରେ ପଡ଼ି ମରିବି, ପୁଅ ବି ମରିଯିବ ।”

“ବିକୁନାହୁଁ କାହିଁକି ?”

“କିଏ ନେବ ? ପୁଅ କ'ଣ ପନିପରିବା ହୋଇଛି ଡାକ ଡାକ ବୁଲିବି ? ସଂସାରରେ ପିଲା କ'ଣ ଊଣା ? ତଥାପି ପୁଅ'କୁ ତାକୁ ପଚାରୁଥାଏଁ, କେହି ନିଅନ୍ତି ନାହିଁ ।”

“କେତେ ନେଲେ ଦବୁ ?”

“ମଣିଷ ପିଲା କ'ଣ ବିକାହୁଏ ? ଗୋରୁ ମଇଁଷୀ ଦାମ୍ ତ ଆଜିକାଲି ଶହ ଶହ ହଜାର ହଜାର, ମଣିଷ ପିଲା କ'ଣ ତାଙ୍କଠୁ ହୀନ ? ସେକଥା ନୁହେଁ ଯେ, ପୋଷି ତ ପାରିବି ନାହିଁ, ମୁଁ ଜାଣେ ମୋ ଆୟୁଷ ବେଶୀ ଦିନ ନୁହେଁ, ଯେ କେହି ଭଲ ଲୋକଟିଏ ମୋ ପୁଅକୁ ପାଳନ୍ତା, ତା ମା' ହୁଅନ୍ତା, ତାକୁ ଭଲରେ ରଖନ୍ତା, ମତେ କିଛି ଟଙ୍କା ଦେଲେ ମୋର ବି କାମରେ ଲାଗନ୍ତା । ସେଇ କଥାକୁ କହୁଛି, ବିକି ଦେବି ।”

“ତୋର ତୁ ଯାହା ଭାବୁଥା, ମୁଁ ନେଉଛି ଏ ପିଲାକୁ ମୁଁ ମୋ ପୁଅ କରିବି, ପୋଷିବି ପାଳିବି, ତୁ ଆଉ ତା ପାଖକୁ ଆସିବୁ ନାହିଁ, ତୋର ବୋଲି ତାକୁ କହିବୁ ନାହିଁ, ମତେ ଦେଇଦବୁ ଯେ ଦେଇଦବୁ । କହ, ସେମିତି ମାଗଣା ଦବୁ, ନା କେତେ ଟଙ୍କା ପାଇଲେ ଦବୁ ?” ଗଙ୍ଗାମ୍ମା ତା ମା' ବାପ ଭଉଣୀ ଇତ୍ୟାଦିଙ୍କ ବିଷୟରେ କହିଲା, ତାଙ୍କ ଘରେ କେହି ସାନ ପିଲା ନାହିଁ, ସେମାନେ ତାକୁ ପାଇ ଅତି ସ୍ନେହରେ ପାଳିବେ ବୋଲି କହିଲା । ସ୍ତ୍ରୀ ଲୋକଟି ଭାବି ଭାବି କହିଲା—“ଶହେ ଟଙ୍କା ଦିଅ ।” ଗଙ୍ଗାମ୍ମା କହିଲା, “ଆମେ ନିତି ଖଟିଲେ ନିତି ଖାଇବା ଲୋକ,

ସେ ଶବ୍ଦେ ପଢ଼େ ଚଳିବ ନାହିଁ । ଆଚ୍ଛା ତତେ ଚାଳିଶି ଟଙ୍କା ଦେବି, ସେତିକ ନେଇ ଯା' ପଳା ।"

ସ୍ତ୍ରୀ ଲୋକଟି ତା ସଙ୍ଗରେ ଜାନକାମ୍ମା ଘରକୁ ଗଲା । ଜାନକାମ୍ମା ରାଜେଶ୍ୱରୀ ଝିଅଠୁଁ ଶୁଣିଲେ, ଜାନକାମ୍ମା ଖୁସି ହୋଇଗଲା ଯେ ତା ଝିଅ ପାଇଁ ଗୋଟିଏ ଖେଳଣାଟିଏ ମିଳିଗଲା । କିଏ ଜାଣେ—ହୁଏତ ଭବିଷ୍ୟତରେ ଏଇ ପିଲା ହେବ ପରିବାରଟିର ଭରସା ।

ସ୍ତ୍ରୀ ଲୋକଟି କାନ୍ଦ କାନ୍ଦ ପୁଅଟିକୁ ଗୁଡ଼ାଏ ଚୁମା ଦେଲା, ରାଜାମ୍ମାଠୁଁ ଚାଳିଶି ଟଙ୍କା ପାଇ ତା ହାତକୁ ତାକୁ ଟେକିଦେଲା, ତା' ପରେ ପିଠି ବୁଲେଇ ଏକମୁହାଁ ହୋଇ ଚାଲିଗଲା ଯେ ଚାଲିଗଲା, ଆଉ କେବେ ଦେଖା ପଡ଼ିଲା ନାହିଁ । ପିଲାଟିର ନାଁ ରଖାଗଲା "ଧର୍ମରାଜୁ", ଡାକିଲେ "ଧର୍ମାପ୍ପା" ବୋଲି । 'ଧର୍ମରାଜୁ' ନାଁଟି ଜାନକାମ୍ମା ବହୁତ ଆଶା କରି ଦେଇଥିଲା, ତା ଅର୍ଥ 'ଧର୍ମରାଜା' ସାକ୍ଷାତ୍ ଧର୍ମ ଦେବତା । ତା'ର ଓ ତା ପରିବାରର ସବୁ ଦୁଃଖ ସବୁ ତ ସେ ଜଳଜଳ ଦେଖିଛନ୍ତି, ଜୀବନଯାକ ନାନା ସମସ୍ୟା ଭିତରେ ତାଙ୍କୁ ସେ ଡାକିଛି, ଡାକେ—ତଥାପି ତା ଦୁଃଖର ଅନ୍ତନାହିଁ । ବେଳେ ବେଳେ ଭଗବାନଙ୍କ ଅବିଚାର କଥା ଭାବି ତା ମନ ବିଦ୍ରୋହୀ ହୁଏ । ପୁଣି ସେ ନିଜେ ହିଁ ଭାବେ, ଭଗବାନଙ୍କ ବିରୁଦ୍ଧରେ ଚିନ୍ତା କରିବା ହିଁ ପାପ, ତହିଁରେ ଆହୁରି ବିପଦ । କୁଆଡ଼ୁ ସେ ପୁଅ ପିଲାଟିଏ ଆଣି ତା ରାଜାମ୍ମା ହାତରେ ଦେଲେଣି, ଏଣିକି ସେ ସମ୍ଭାଳନ୍ତୁ, ତାଙ୍କ ନାଁ ଧରି ପିଲାକୁ ଡାକିଲେ ବାରମ୍ବାର ତାଙ୍କର ନାଁ ସ୍ମରଣ ପଡ଼ୁଥିବ ।

ରାଜାମ୍ମା ତାକୁ ମା'ପରି ସ୍ନେହ କରେ, ସମୟ ପାଇଲେ ତା କାମ କରେ, ତା ଯତ୍ନ ନିଏ, ଅନ୍ୟବେଳେ ଅନ୍ୟମାନେ ସେ ଦାୟିତ୍ୱ ନିଅନ୍ତି । ସନ୍ତାନବତୀ ନ ହୋଇ ପିଲା କାଖେଇ ସେ ନିଜକୁ ତା ମା' ବୋଲି କଳ୍ପନା କରେ, ସେତେବେଳେ ଏକପ୍ରକାର ମାତୃସ୍ନେହ ତା ମନକୁ ଓଦା କରିଦିଏ, ମୁହଁ ଆଖିରେ କୁଆଡ଼ୁ ଆସି ବସେ ଗୋଟିଏ ସରଳ, କୋମଳ ଛବି ଯାହା ତାଠି ଅନ୍ୟବେଳେ ଲାଗନ୍ତା ଅସ୍ୱାଭାବିକ ବୋଲି । କିନ୍ତୁ ତା'ର ସେ ଅବସ୍ଥା ବେଶୀ ବେଳ ରହେ ନାହିଁ । ପୁଣି ତା ମନ ଚଞ୍ଚଳ

ହୋଇଉଠେ, ତା'ର ଯେଉଁ କଥାକୁ ସେହି କଥା—କାମନାର ଅମେଣ୍ଟା ରୋକ ଶୋଷ, ଉତ୍ତେଜନା, ନୈରାଶ୍ୟ ଯୋଗୁଁ ବିଷାଦ ଓ ଅବସାଦ, ପୁଣି ଆପେ ଆପେ ସବୁ ଅନୁଭୂତି ପ୍ରତି ଅନ୍ଧ, ବଧିର ଓ ସ୍ପର୍ଶଶକ୍ତିହୀନ ହୋଇ ବନ୍ଧାଗତିରେ ନିତିଦିନ କଳ କାମ କରି ଦିନ ପରେ ଦିନ ବିତେଇଯିବା ଜୀବନ-ବିସ୍ମୃ।

ଜାନକାନ୍ତା ବଡ଼ ଝିଅ କଥା ଭାବେ, ମନେ ମନେ ଶୋକ କରେ। ତା'ର ତତଲା ନିଃଶ୍ୱାସ ଫଁ ଫଁ ଗୁଲେ, ସେ ଭୁନି ହୋଇ ରହେ ଓ ନୀରବରେ ଆକୁଳ ହୋଇ ଠାକୁର ଠାକୁରାଣୀମାନଙ୍କୁ ଜଣାଏଁ। ମନେ ମନେ ସେମାନଙ୍କୁ ପଚାରେ—"କେଉଁଠି ମୋ ତ୍ରୁଟି ? ଏ ଅବସ୍ଥାରେ କ'ଣ ଆଜ କରିପାରି ଥାନ୍ତି ଯେ !" ସେ କେବେ ଅଳସ ହୋଇନାହିଁ, ତା ପରିଶ୍ରମ, ତା ଉଦ୍ୟମ କରି କରି ଗ୍ଭଲିଛି। ସ୍ୱାମୀ ହେଲା ଅନ୍ଧ, ଅଥର୍ବ, ରୁଗ୍‌ଣ, ଦୁର୍ବଳ, ଜରାଗ୍ରସ୍ତ—ସବୁ ପ୍ରକାରେ ସେ ତା ସେବା ଯତ୍ନ କରି ଆସିଛି, ପିଲାଙ୍କୁ ପାଳିଛି ସମ୍ଭାଳିଛି, ଦୁଇଟା ଝିଅ ବିଭା କରିଛି। ବଡ଼ ଝିଅକୁ ଥରେ ନୁହେଁ, ଦୁଇଥର ବିଭା ଦେଇଛି, ସେଥିପାଇଁ ବହୁତ ପଇସା ନଷ୍ଟ କରିଛି, ଗାଁ ଘର ଭାଙ୍ଗିଗଲା, ସେଠି ନୂଆ କରି ଖଞ୍ଜାଟିଏ ତୋଳେଇଛି, ରଖିଛି, ଗାଁରେ ଜମି ଯତ୍ନ ନିଆଇଛି, ଯାଇ ଆସି ନିଘା ରଖେ, ଗାଁରେ ତ ଅତି ସାମାନ୍ୟ ଜମି ଥିଲା, ନିଜ ଅର୍ଜନରେ ସେଠି ସେ ଆଜ ଦି'ମାଣ କିଣି ଯୋଡ଼ିଛି, ସାନ ଝିଅ ବିଭା ଦେବାକୁ ଚେଷ୍ଟା କରୁଛି, ଏବେ ବି ସେଥିପାଇଁ କିଛି କିଛି କରି ସଞ୍ଚୁଛି ଓ ତା ଦେହରେ ଏତେ ବର୍ଷରେ ଯାହା କିଛି ସୁନା ସେ ନାଇଛି ସେତିକ ସବୁ ବି ସେଥିରେ ଖର୍ଚ୍ଚ କରିଦେବ। ସ୍ତ୍ରୀ ଲୋକଟିଏ ହେଲେ ବି ତା ସ୍ୱାମୀ ତରଫରୁ ଗାଁ ସମାଜ ଚଳଣି ଅନୁସାରେ ଯେତେବେଳେ ଯେଉଁ ସାମାଜିକ କର୍ତ୍ତବ୍ୟ ଲାଗି କିଛି ଖର୍ଚ୍ଚ କରିବା ଆବଶ୍ୟକ ପଡ଼ିଛି ତା ମଧ୍ୟ ଭୁଲେଇଛି—ସେ ଓ ତା ଝିଅମାନେ ପର ଘରେ ବାସନ ମାଜି ଘର ଓଳେଇ ମୋଟା କାମ କରି ଠିକାଗ୍ଭକରାଣୀ ହୋଇ ଚଳନ୍ତୁ ପଛେ—ସେଇଟା ତ ଏ ଦୂର ସହରରେ ରୋଜଗାର ପାଇଁ ତାଙ୍କ ବୃତ୍ତି ମାତ୍ର—କିନ୍ତୁ ନିଜ ଗାଁରେ ସେମାନଙ୍କର ନିଜ ସମାଜରେ ସ୍ଥାନ ଅଛି, ମର୍ଯ୍ୟାଦା ଅଛି, ସବୁ ବିପତ୍ତି ସବୁ କଷ୍ଟ ସହି ପରିଶ୍ରମ କରି କରି ସେ ଚେଷ୍ଟା କରି ଆସିଛି, ଗାଁ ମାଟିରେ ସେମାନଙ୍କର

ଟେର ବମ୍ଭକର ରଖିବାକୁ । ନିଜ ପ୍ରତି ନିର୍ଦ୍ଦୟ ହୋଇ ହୋଇ ସେ ବର୍ଷ୍ଣରବ୍ଧି କାମ କରି ଚାଲିଛି, ତା ଭିତରେ ଯେ କ'ଣ ଘୂଣ ଧରିଲାଣି ଏକଥା ସେ ବୁଝିପାରେ, ଦେହ ଝଡ଼ିଗଲାଣି, ଦୋହଲିଲାଣି, ମନ ଟାଣ କରି ଦେହ କାଠ କରି କାମ ଚୁଣ୍ଡାଇ ଆସିଲେ ବି ସେ ବୁଝେ ସେ ଆଜି ସେ ନାହିଁ । ବେଳେବେଳେ ଆଖି ଆଗରେ ଜୁଳୁଜୁଳିଆ ଉଡ଼ନ୍ତି, ଘୁରି ଗୁଡ଼ାଏ ଭାସିଯାଏ । ଏଇଆ ଭାବ ମନକୁ ଉଷୁମ୍ କରେ ଯେ, ସେ ତା କର୍ତ୍ତବ୍ୟ କରିଛି, କେହି ତାକୁ କେବେ ମନ୍ଦ ବୋଲି କହିନାହିଁ ।

ଅନ୍ଧ ଯୋଗୁଲୁ ଜରା ଓ ରୋଗର ଦାଉରେ କଷ୍ଟ ପାଏ, ସେ ଭୁଲିଗଲାଣି ଯେ, ତା'ର କର୍ତ୍ତବ୍ୟ ଥିଲା ଏ ପରିବାରକୁ ପୋଷିବା ପାଳିବା, କାହା ପାଇଁ କଷ୍ଟ କରିବା ଭଳି କି କାହାକୁ କଷ୍ଟ ଦେଲାଭଳି ତା'ର ଆଦୌ କଷ୍ଟ କର୍ତ୍ତବ୍ୟ ବୋଲି ଆଜି ତା'ର ମନେନାହିଁ । ଓଲଟି ସେ କ୍ଷୁବ୍‌ଧ—ବିରକ୍ତ ଯେ, ତା'ର ନାନା ଆବଶ୍ୟକତା ଏମାନେ କେହି ପୂରଣ କରୁନାହାନ୍ତି । ତା'ର ମଦ ପିଇବାକୁ ଖୁବ୍ ଇଚ୍ଛା ହୁଏ, ଯେତେ ମାଗିଲେ ସୁଦ୍ଧା ଏମାନେ ଦିଅନ୍ତି ନାହିଁ, କହନ୍ତି ଡାକ୍ତର ମନା କରିଛି । "ଆରେ କୋଉ ବଡ଼ ଜାଣିଲାବାଲା ଡାକ୍ତରକୁ ତେମେ ଦେଖେଇଚ ନା ପଇସା ଖର୍ଚ୍ଚ କରୁଚ, ତୁଚ୍ଛାକୁ ଡାକ୍ତର ମନା କରିଛି ।" ସେ କହେ, ନାନା ସୁଆଦିଆ ଖାଦ୍ୟ ଖାଇବାକୁ ତା'ର ଏବେ ମନ ହେଉଛି,—ମାଂସ, ମାଛ, ମିଠେଇ, ପିଠାପଣା, କଷ୍ଟ ଦିଅନ୍ତି ନାହିଁ । ଇଚ୍ଛା ହେଉଛି ପାଟିଟା ଚାଲୁଥାନ୍ତା ସବୁବେଳେ, କିଏ ଶୁଣୁଛି ? ବେଳେବେଳେ ବାଉଳା ବାଉଳା ହୋଇଯାଏ, ଭାବେ ଯେ, ତା'ର ବହୁତ ଧନ ସମ୍ପତ୍ତି ଥିଲା, ଏମାନେ ମାଡ଼ିବସିଲେ କି ଉଡ଼େଇଦେଲେ । ଶୁଣିବାକୁ କେହି ନଥାନ୍ତି ପଛେ, ସେ ମଝିରେ ମଝିରେ ତା ଫର୍ମାସି ହାଙ୍କି ପାଟିକରେ, ଯେଉଠୁ ଗାଳିଦିଏ, କେତେବେଳେ ବା କାନ୍ଦୁଥାଏ । ଜାନକାମ୍ମା କାମରୁ ଫେରିଲେ ତାକୁ ବୁଝାଏ, ଭୁଲାଏ, ସଫାସୁତୁରା କରୁଥାଏ, ସ୍ନେହରେ କଥା କହି କହି ତା ଗୋଡ଼ହାତ ଦେହ ଆଉଁଷା କରେ, ନିଜର ଲୁହ ବୋହିଲେ ପୋଛି ପକାଏ ।

ରାଜେଶ୍ୱରୀ ଭାବେ ଯେ, ଆଉ ବେଶୀ କାଳ ନୁହେଁ, ସେ ବଡ଼ ହୋଇଯିବ । ସେ ସୁଖ ସ୍ୱପ୍ନ ଦେଖେ । ସେ ବଢ଼ିଉଠୁଛି, କେତେ ଯୁବକ

ତାକୁ ଆଖି ପକାଇବାର ସେ ଭୁଲି ପାରିଲାଣି, କିନ୍ତୁ ତା ପିଲାଙ୍କୁ ସେ ତା ମା'କୁ ହିଁ ମାନ ଆସିଛି, ଅନୁସରଣ କରିଛି, ଅନ୍ଧାରେ ପଶିବାକୁ ତାକୁ ଘର ଡର, ନିଜ ମର୍ଯ୍ୟାଦା ନଷ୍ଟ କରିବାକୁ ତାକୁ ଘୃଣା ଲାଗେ । ଯୁବକମାନଙ୍କୁ ମୁହଁ ଦେବା ତ ଦୂରର କଥା, କାହା ହାବଭାବରୁ ତା ମନରେ ସନ୍ଦେହ ହେଲାମାତ୍ରେ ସେ ସତର୍କ ହୋଇ ରହେ । ସେ ଭାବେ, ମା'ର କାନ ଧରି ଚାଲିଥିଲେ ସେ ନିରାପଦ ।

ସହରରେ ଲୋକେ ଦେଖନ୍ତି, ସବୁଦିନେ ବଡ଼ିସକାଳୁ ସେ ମା' ଆଉ ଦୁଇ ଝିଅ ଅନ୍ୟାନ୍ୟ ଠିକା ଚାକରାଣୀଙ୍କ ଦଳରେ ସେହି କୁଡ଼ିଆ-ମସ୍ତ ଦରିଦ୍ର ଠିକା-ବସ୍ତି ଭିତରୁ କାମ କରିବାକୁ ବାହାରି ପଡ଼ନ୍ତି, ତା'ପରେ ଖେଳେଇ ହୋଇପଡ଼ି ସେ ଯାହା ଯିବା ବାଟ ଧରନ୍ତି । ତାଙ୍କ ମୁହଁରେ କି ଚେହେରାରେ କୌଣସି ଅଭିଯୋଗ ନ ଥାଏ, ଚାହାଣୀରେ ଚାଲିରେ ଉଦ୍ଦେଶ୍ୟ ବାରି ହୋଇପଡ଼ୁଥାଏ, କାମିକା ଲୋକ, କାମକୁ ଚାଲିଛନ୍ତି, ଅଳସେଇ ହେବାକୁ ଫୁରୁସତ୍ ନାହିଁ କି ମନ ନାହିଁ । ଆସେ ଥୁରୁଥୁରୁ ଶୀତ, କୁଙ୍କିରି କାଙ୍କିରି ଶୀତ, ଦେଖେ ସେମାନେ ଚାଲିଛନ୍ତି, ଟରଟର ଚାଲି ଟରଟର, —ଆସେ ଟାଇଁ ଟାଇଁ ଖରା, ସେମାନେ ଚାଲିଛନ୍ତି, ଚାଲି ଟରଟର,—ଆସେ ଢୁଢୁ ବରଷା, ସେମାନେ ଚାଲିଛନ୍ତି ଛନ୍ଦବୁଡ଼ । କାହାର ମୁଣ୍ଡରେ ଛତା, କାହାର ଖଣ୍ଡେ ଶସ୍ତା ପ୍ଲାଷ୍ଟିକ୍ କନା, କାହାର ତା ବି ନାହିଁ, ଖଣ୍ଡେ ଛିଣ୍ଡା ଲୁଗା ମୁଣ୍ଡରେ ପକାଇଛି, ଦେହରୁ ପାଣି ଦରଦର ବୋହୁଛି ।

କବାଟରେ ଖଡ଼ଖଡ଼, କିଏ ଡାକୁଛି, "ଆମ୍ମାଁ (ମା), କବାଟ ଖୋଲ ।"

ତା ୨୮ । ୧ । ୮୪